# ନିଜ ନିଜର ସମୁଦ୍ର





ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

# ନିଜ ନିଜର ସମୁଦ୍ର

(କବିତା ସଂକଳନ)

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ
ସ୍ମୃତିଚିତ୍ର, ୬୭, ସରସ୍ୱତୀ କୁଞ୍ଜ, ଜାଗମରା, ଖଣ୍ଡଗିରି, ଭୁବନେଶ୍ୱର-୩୦
ମୋ-୯୪୩୭୨୫୬୧୭୬

ପ୍ରକାଶକ :
ଅପୂର୍ବା
୧୦୪୬-ଡି, ଚଣ୍ଡିମାତା କଲୋନି,
ରସୁଲଗଡ଼, ଭୁବନେଶ୍ୱର - ୭୫୧୦୧୦

ପ୍ରଥମ ସଂସ୍କରଣ : ନବବର୍ଷ ୨୦୧୫

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ପତି

ମୂଲ୍ୟ : ୧୫୦ଟଙ୍କା

## Nija Nijara Samudra

*A collection of Poems By* **Dr. Fanidra Bhusan Nanda**
Smrutichitra, 67, Saraswati Kunja, Jagamara, Khandagiri
Bhubaneswar-30 Mob.-9437256176

Publisher : **Apurba**
1046 D, Rasulgarh, Bhubaneswar - 751 010

First Edition : New Year-2015

Printed at :
Apurba Off-Set, Bhubaneswar, Pin-- 751 010

Cover Design : Kshirod C Pati

**Price : Rs.150 /- ( One hundred fifty only)**

# ଉତ୍ସର୍ଗ

ସମୁଦ୍ର ପରି ପ୍ରଶାନ୍ତ, ଜ୍ଞାନଗର୍ଭ
ସମୁଦ୍ରୁଣୀ **ଶ୍ରୀମତୀ ଭାସ୍ୱତୀ ପଣ୍ଡା**
ଓ
ସମୁଦ୍ର ପରି ଛଳଛଳ, ରସାଳ, ଚିତ୍ରିତ ଓ ମଧୁମୟ
ସମୁଦ୍ରୀ **ଡକ୍ଟର ଦିବାକର ପଣ୍ଡାଙ୍କୁ**
'ନିଜ ନିଜର ସମୁଦ୍ର' ସମର୍ପିତ ।

**ଫଣୀନ୍ଦ୍ର**

# ସୂଚୀପତ୍ର

## ଏଣ୍ଡୁଅ ଦେଖା

ମା' ମନାସି ଥିଲା ଶାଢ଼ୀଚୂଡ଼ି
କଳାବୋଦା
ରମ୍ଭାଦେବୀଙ୍କୁ, ଶରଣିପାଟଙ୍କୁ
ଦେବୀ ଧପାଲି ଆସୁଥିଲେ କଳାଘୋଡାରେ
ବାରହାତୀ ଖଣ୍ଡା ଧରି
ସ୍ୱପ୍ନରେ ବାସ୍ତବରେ

ମା' ଦୁଃଖରେ ସୁଖରେ
ଯନ୍ତ୍ରଣାରେ ଦେଖୁଥିଲା ଦେବୀଙ୍କ
ଲହଲହ ମୂର୍ତ୍ତି
ମୁଁ ଦେଖୁଥିଲି ଏଣ୍ଡୁଅଟିଏ
ମୁଣ୍ଡର ରଙ୍ଗ ସିନ୍ଦୂର ପରି
ଦୁଃଖରେ ସୁଖରେ ବଦଳୁଥିଲା
କେତେବେଳେ ଈଷତ୍‌ଲାଲ ତ
ପରକ୍ଷଣରେ ହଳଦିଆ
ମୁଣ୍ଡ ଫୁଲାଇ ଉତ୍‌ଫୁଲ୍ଲିତ ତ
ମଣିଷର ଅତ୍ୟାଚାରରେ ଘାଇଲା
ମୁଁ ଟେକା ମାରିଲେ
ସେ ସନ୍ତର୍ପଣରେ ଲୁଚି ଯାଉଥିଲା
ବୁଦା ଗହଳରେ ।

ତାର ସାମ୍ରାଜ୍ୟ
ବୁଦା ମୂଳରୁ
ବୁଦା ଅଗଯାଏଁ
ମୁଁ ନିରେଖିଥିଲି
କେତେ ସନ୍ତୁଷ୍ଟ ସେ
ନିଜର ସୀମିତ ପରିଚୟ ନେଇ
ସୀମିତତା ଯେମିତି ପରିବ୍ୟାପ୍ତ
ଭୂମା ପରି ।

ଦିନେ ଏଣ୍ଡୁଅଟିଏ
ସାଥୀକୁ ଧରି ଖେଳିଲା
ମୁହଁର ରଙ୍ଗ ବଦଳିଗଲା
ହସହସ
ପ୍ରେମ ପ୍ରେମ
ସ୍ୱପ୍ନ ସ୍ୱପ୍ନ
ସେଦିନ ମୀନାକୁ
ଏଣ୍ଡୁଅ ଦେଖିବୁ ଆ' କହି
ବୁଦା ଗହଳରେ ଦେଇଥିଲି
ସରୁ ଏକ ଚୁମ୍ବନ;
ସେ ହସିଥିଲା
ଦୁଷ୍ଟ କହି ଚାଲିଗଲା
ମୁଁ ବ୍ୟସ୍ତ ଥିଲି ଏଣ୍ଡୁଅର
ପିଛା କରିବାରେ ସାରାଟା
ଜୀବନ ;

ଜୀବନର ବୋଝରେ
ହଜିଗଲା ପ୍ରେମର ଲଳିତ ବିସ୍ତାର
ସହରର କଙ୍କ୍ରିଟ ପଥରେ
ନାତି ନାତୁଣୀ ସହିତ
ମୀନା ଦିନେ ଦେଖା ହେଲା
କହିଲା, ଏଠି ସହରି
ବୁଦା ଗହଳରେ ଏଣ୍ଟୁଅ
ଦେଖାଇବୁକି,

ମୁଁ କହିଲି,
ଧେତ୍ ସହରୀ ହାୱାରେ
କଣ ଏଣ୍ଟୁଅ ଥାଏ କି
ଏଣ୍ଟୁଅ ଦେଖା
ସେମିତି ସ୍ୱପ୍ନ ହେଇଥାଉ
ପ୍ରେମ ହୋଇଥାଉ
ଆମ ପୌଢ଼ ବୟସରେ ।



# ନୂଆ ନନ୍ଦିଘୋଷ

ହୃତ ଐଶ୍ୱର୍ଯ୍ୟ ଟାଙ୍ଗରା ଭୂଇଁ
ମୁଗ୍ଧ ଦିଗନ୍ତର ଆଖିମିଟିକାରେ
ଭୁଲି ସାରିଛି ଯୌବନ
ପୋଡା ଭୂଇଁରେ ଯେଉଁ
ବୀଜଟି ପଡିଛି
ଆସ ତାକୁ ପାଣି ମୁନ୍ଦାଏ ଦେବା
ଆଲୋକ ଦେବା
ଚିରୁଡାଏ ସ୍ନେହ ଦେବା ଯେ
ସବୁଜ ପ୍ରେମରେ ମାଟି
ଫେରିପାଇବ ତାର
ଧ୍ୱସ୍ତ ଐଶ୍ୱର୍ଯ୍ୟ ।

ଦୁଃଖକୁ ଅବଧାରିତ ନିୟତି ବୋଲି
ଜାବୁଡି ବସିଥିବା ଶରଣାର୍ଥୀମାନେ
ଏଥର ସାମୂହିକ
କଦମତାଳରେ ସୁଅ ଆଡକୁ
ରୁଗ୍ ରୁଗ୍ ଅନ୍ଧାର ଭିତରେ
ଜାଙ୍ଗୁଲୁ ଜାଙ୍ଗୁଲୁ ଯନ୍ତ୍ରଣା ଭିତରେ
ଶୁଭୁଥାଏ ଅନାହତ
ବଂଶୀର ସ୍ୱନ

ମାଓ ଆକ୍ରମଣରେ ଛେଉଣ୍ଡ
ଶୈଶବର ଐକତାନ ।
ସମୁଦ୍ର ଓ ଜଙ୍ଗଲ ଭିତରେ
ଜାଗାଟିଏ ସୁରକ୍ଷିତ
ଛାତି ଭିତର ଅନ୍ଧାର ପରି
ନିରାପଦ
ସୁନ୍ଦର ମନ ମୁଗ୍ଧକର
ଶିତଳ ଚନ୍ଦନ ।

ଆସ ନୂଆ ଇତିହାସଟିଏ ଗଢ଼ିବା
ଧ୍ୱସ୍ତ ପାହାଡକୁ ଫେରାଇ ଦେବା
ଅପହୃତ ଯୌବନ
ମାଓ ଆକ୍ରମଣରେ ସ୍ୱାମୀପୁତ୍ର ହରାଇଥିବା
ନାରୀଟିକୁ ଯୋଗାଇଦେବା
ଆଶ୍ୱାସନାର ପବନ
ମାଟି ଫଟାଇ ବୀଜପତ୍ର ମେଲୁଥିବା
ଚାରାଟିକୁ ଦେଖାଇଦେବା
ସୁନୀଳ ଗଗନ ।

ଆସ
ଗଢ଼ିବା ନୂଆ ନନ୍ଦିଘୋଷ
ପୋଡା ଦାରୁରେ
ସବୁଜ ବିଗ୍ରହ ।



## ସ୍ୱପ୍ନକୁ ଚମକାଇ

କଙ୍କିଟିଏ ଚମକାଇ ଦେଇଥିଲା
ମୋତେ ସ୍ୱପ୍ନରେ
ଅନେକ ବର୍ଷ ତଳେ

ସେ ଉଡୁଥିଲା ଉପରେ
ମୁଁ ତଳେ ତ
ପୁଣି ସେ ମାଟିରେ ମୁଁ
ଉଡୁଥିଲି ଆକାଶରେ ।

ଅସରା ସଙ୍ଗୀତ ପରି ପ୍ରକୃତିର
ସ୍ୱପ୍ନ ସରୁଥିଲା
ଉଡିବା ସରୁ ନ ଥିଲା ମୋ ଆୟୁଷ ସାରା ।
ତା ଡେଣାରେ ଲେଖିଥିଲା ଏକ
ଅପଢ଼ା କବିତା ବିଦ୍ୟୁତ୍ ଓ ଝର୍ଣ୍ଣା
ଗତିରେ ଥିଲା ନଈର ସୁଅ
ଗଛର ଲୁହ ଝରାପତ୍ରର ଆବେଗ
ଲାଜ ଲାଜ କାଶତଣ୍ଡିର ଫାଙ୍କିଲ ଫଗୁଣ ।

ନଦୀବନ୍ଧ ହେଲାପରେ
ବୁଡିଗଲା ଘରବାଡି ଅରଣ୍ୟକାନ୍ତାର

ବିସ୍ଥାପିତ ଲୋକ ପରି ମୁଁ
ଲଦା ହେଲି ଟ୍ରକରେ ଠେଲି ନେଲା ସମୟ
ହେତୁ ଆସିଲା ବେଳକୁ ନୂଆ ଜଙ୍ଗଲ
ନୂଆଁଣିଆ ମେଘ, ପାହାଡ ସନ୍ଧି ଘର
ସଞ୍ଜ ଛୁଆଁ ଗାଁ ଦାଣ୍ଡ
ନିଛାଟିଆ ପବନରେ ସେ ଉଡୁଛି ମୁଁ ବି ।

ଦିନେ ନଈ କୂଳେ ଡଙ୍ଗା ବନ୍ଧା ହୋଇଛି
ନାଉରୀକୁ ଡାକ ଛାଡିଲା ବେଳେ
କେହି କୁଆଡେ ନାହାଁନ୍ତି
ପୁଅଖିଆ ପଥର କୋଣରୁ ଉହ୍ଲୁଁକୁଛି
ପିଶାଚୀ, କା'ର ଜୁଇ ଦେଖି କା'ର ଦୁଇ ଆଖି
ଚମକି ପଡିଲୁକି ବୋଲି ପଚାରି ଦେଉଛି ସନ୍ତର୍ପଣରେ

ନଈ ପରି ସେ ବହି ଚାଲିଛି
ପିଜୁଳି, କରମଙ୍ଗା, କନିଅର ଗଛ
ଫୁଲପରି ହସୁଛି, ଫଳ ପରି ଖସୁଛି
ପବନ ଡାକିଲେ
ତୋଫାନ ଡାକିଲେ
କେହି କୁଆଡେ ନଥିଲେ
ଲାଜ ଲାଜ ହୋଇ ସେ ହସୁଛି
ଉଡୁଛି ସମୟ ହୋଇ ଜୀବନ ହୋଇ
ସ୍ୱପ୍ନରେ ସ୍ୱପ୍ନକୁ ଚମକାଇ ।



## କଙ୍କି

ସ୍ୱପ୍ନରେ ଚମକିବା ଅବଧାରିତ ଥିଲା
କଙ୍କିଟିଏ ବ୍ୟାପୁଥିଲା ସାରା ଆକାଶ
ମୋ ଆୟୁଷ
ସଂଜ ଓ ସକାଳ ।

ଗଛ ଉପରେ ସେ ଉଡୁଥିଲା ତ
ମୁଁ ମେଜ ଉପରେ
ମାଟିରେ ସେ ବସୁଥିଲା ତ
ମୁଁ ଉଡୁଥିଲି ପାହାଡ ଶୀର୍ଷରେ
ଉଡିବାର ପ୍ରତିଯୋଗିତା ଅନବରତ
ସାରା ଜୀବନ କାଳ ।

ତା ଡେଣାରେ ଲେଖାଥିଲା
ଅବୋଧ କବିତା ବେଗବତୀ ଝର୍ଣ୍ଣା
ଗଛର ବିରହ ଓ ବିଜୁଳି ଚମକ
ଲାଜ ଲାଜ କିଶୋରୀର ପ୍ରଥମ ପ୍ରେମ ।

ନଦୀବନ୍ଧ ହେଲାପରେ
ବିସ୍ଥାପିତ ଲୋକଙ୍କ ପରି
ମୁଁ ଖୋଜୁଥିଲି ଘର ସେ ଉଡୁଥିଲା

ଟ୍ରକରେ ଲଦା ହୋଇ ମୋର ଯୌବନ
ସୃଷ୍ଟିକଲା ନୂଆ ପରିବାର
ନୂଆ ସମ୍ପର୍କ, ଅନୂଢ଼ା ସହର
ପାହାଡ଼ ମଥାନ, ଜଙ୍ଗଲର ଘର
ନିଛାଟିଆ ପବନ ସହିତ ଲୁଚକାଳି ଖେଳି
ସେ ଉଡୁଛି ମୁଁ ବି ।

ବିସ୍ଥାପିତ ଲୋକ ପରି
ମୋ ଯୌବନ ମୋର ପ୍ରେମ
ସ୍ଥାନାନ୍ତରିତ ହୋଇଥିଲା
ମୁଁ ଖୋଜୁଥିଲି ବାସ
ବାସ ହରା ହୋଇ
ସେ ଉଡୁଥିଲା- ବେପରୁଆ
ମୁଁ ଗଢୁଥିଲି ନୂଆ ସମ୍ପର୍କ
ଅପରିଚିତ ପରିବେଶ ସହ
ସେ ହସୁଥିଲା- ନିର୍ବିକାର

ଅସହାୟ ସମୟ ସହ ସନ୍ଧିକରି
ନିଛାଟିଆ ପବନ ସହ ଲୁଚକାଳି
ଖେଳି
ମୁଁ ପହଁରୁଥିଲି ଶୂନ୍ୟରେ
ସେ ବି ।

ଉତ୍ତୀର୍ଣ୍ଣ ବୟସର ନଦୀକୂଳେ
ଦିନେ ସ୍ୱପ୍ନରେ ସେଇ ସମାନ ଦୃଶ୍ୟ
ଅଥଚ ମୁଁ ନଦୀ ପାରି ହେବାକୁ ତତ୍ପର
ସେ ନାଉରୀ ପରି ଅଦୃଶ୍ୟ
ଆରକୂଳରେ ସେ ଉଡୁଛି
ସନ୍ତର୍ପଣରେ ପଚାରି ଦେଉଛି
ଚମକିଲୁକି
ସ୍ୱପ୍ନରେ କା'ର ଦୁଇ ଆଖି ?

ଆକାଶ ପରି ଲମ୍ବି ଚାଲିଛି
ସ୍ମୃତି ହୋଇ ଅତୀତ ହୋଇ
ଦିଗନ୍ତ ଦିଗନ୍ତ ଆବୋରି

ଉଡୁଛି ସମୟ ହୋଇ ଜୀବନ ହୋଇ
ମୋର ସମଗ୍ର ସତ୍ତାକୁ ଚମକାଇ ;

ଅନେକ ବର୍ଷ ତଳର ସେ ସ୍ୱପ୍ନ
କଙ୍କି ହୋଇଛି
ମୁଁ ବି ।



# ସ୍ୱପ୍ନରେ ଉଡିବା

ସ୍ୱପ୍ନରେ ଉଡିବା ଶିଖାଇଥିଲା ମୋତେ
ବହୁ ବର୍ଷ ତଳେ
ଏକ କଳ୍କି;
ଫୁଲ ବଗିଚାରେ ସେ ଆଗରେ
ମୁଁ ପଛରେ
ସେ ଉଡୁଥିଲା ଏ ଡାଳରୁ ସେ ଡାଳ
ମୁଁ ଧାଉଁ ଧାଉଁ ଶିଖି ଯାଉଥିଲି
ଉଡିବା କୌଶଳ ।

ତା' ଡେଣାରେ ଥିଲା ସ୍ୱପ୍ନ
ମୋ ଆଖିରେ ଥିଲା ଅସରନ୍ତି କାହାଣୀ
ଆମ ଭିତରେ ବହି ଯାଉଥିଲା ଝରଣା
ବିଜୁଳି ଚମକ, ପ୍ରକୃତିର ଅନାହତ
ଆକର୍ଷଣ, ବାଦଲର ପ୍ରେମ ।

ଘର ହରାଇ ମୁଁ ଖୋଜୁଥିଲି
ଘର, ସହର ବଜାର
ଗଳି ବସ୍ତିରେ ସେ ଉଡୁଥିଲା ନିର୍ବିକାର
ଡେଣାର ସ୍ୱପ୍ନ, ଯଂତ୍ରଣାର କୋଳାହଳ ଏକାକାର ଥିଲା
ସେ ଉଡୁଥିଲା କୁଳିବସ୍ତିର ମଥାନରେ

ମୁଁ ଚାଳଘରର ଐଶ୍ୱର୍ଯ୍ୟକୁ
ସାଉଁଟିଥିଲି ଆବେଗରେ
ନିଛାଟିଆ ଗଳି ରାସ୍ତାରେ କଦବା
ଅକସ୍ମାତ ଭେଟ ହେଉଥିଲେ
ସେ ଧୀରେ ପଚାରି ଦେଉଥିଲା
ଉଡିବା ଭୁଲି ଗଲୁକି ସଂସାର ଦାୟରେ
ମୁଁ ସନ୍ତର୍ପଣରେ ହସୁଥିଲି
ଶୈଶବର ଫର୍ଦ୍ଦ ଓଲଟାଇ
ସ୍ମୃତିକୁ ଉଖାରୁଥିଲି ।

ଦିନେ ନିଛାଟିଆ ଖରାବେଳେ
ପତ୍ନୀଙ୍କ ରକ୍ତଚାପ ବଢୁଥିଲା
ମୁଁ ଥିଲି ଚିନ୍ତାମଗ୍ନ
ଗାଁର ଭାଗଚାଷ ଉଜୁଡିଯାଇଥିଲା
ଖବର ଆସିଥିଲା
ବନ୍ଧ ଯୋଜନା ଦ୍ୱାରା ଘରଦ୍ୱାର ଜଳମଗ୍ନ
ବାପା ଖାଇବା କଂସାରେ ଟଳିଗଲେ
ମୁଁ ସଜ ହେଉଥିଲି ପରିବାରକୁ
ସହରରେ ଥଇଥାନ କରିବାକୁ
ସ୍ୱଳ୍ପ କ୍ଷତିପୂରଣରେ ।

ବାରବର୍ଷର ପୁଅ ଦଉଡୁଥିଲା
ଦାଣ୍ଡରେ ସ୍ୱପ୍ନର କଙ୍କି ପଛରେ ଆତଙ୍କିତ ପତ୍ନୀ
ମୁଁ ଯେମିତି କଙ୍କି ହୋଇଯାଇଛି ।



# ଅବୋଧ ଅସ୍ଥିରତା

କଙ୍କି କହିଲେ ସ୍ୱପ୍ନରେ ଉଡିବା
ଓ ଶୈଶବର ସ୍ମୃତିରେ
ରୋମାଞ୍ଚିତ ହେବା ;

ବହୁ ବର୍ଷ ତଳେ
ସେ ଉଡୁଥିଲା
ମୁଁ ଧାଉଁଥିଲି ତା' ପଛରେ
ଧାଉଁଥିଲି କି ଉଡୁଥିଲି
କହିବା ଥିଲା କଷ୍ଟକର
ସ୍ୱପ୍ନ ଓ ବାସ୍ତବ ବାରିବା ଥିଲା
ଦୁଷ୍କର ।

ତା' ଡେଣାରେ ଭବିଷ୍ୟତର ସ୍ୱପ୍ନ
ମୋ ପାଦରେ ଅବୋଧ ଅସ୍ଥିରତା
ଆମ ଭିତରେ ହରଦମ ବହି ଚାଲିଥିଲା
ସମୟର ଅସରା କବିତା ।

ବହୁ ଦିନ ପରେ ଗାଁର ନୂଆଣିଆ
ମେଘ, ପାହାଡ ସଂଧି ଘର
ପ୍ରକୃତିର ନିଛାଟିଆ ଭାବ ଛାଡି

ମୁଁ ସହରକୁ ଆସିଲି
ହାଉଯାଉ ଲୋକ ଗହଳିରେ
ଆବେଗର ବାସ୍ନା ହରାଇ
ନିଜକୁ ଖୋଜିଲି ।

ସହରର ଗଳି ରାସ୍ତା, ଦଶଫୁଟ ବାଏ ଦଶଫୁଟ ଘର
ପାର୍କର ନାରୀନାରୀ ଗନ୍ଧ
ଫୁଟପାଥର କୋଳାହଳ
ମୋତେ ଆନମନା କରୁଥିଲାବେଳେ
ସେ ଉଡୁଥିଲା ନିର୍ବିକାର
ପଡୋଶୀ ଘର ଫୁଲ ବଗିଚାରେ ।

ଦିନେ ନିଛାଟିଆ
ଖରାବେଳେ ସେ ଆସିଲା
ଉଡିଲା ଉଡିଲା ଚାହାଁଣିରେ
ଗୁମସୁମ ପବନକୁ ଉଷୁମ କଲା
ପଚାରିଲା 'ଡରିଲୁ କି ?'
ଛାତି ଭିତରେ ପାହାଡ଼ି ଝର୍ଣ୍ଣାଟିଏ
ଦ୍ରୁତ ବେଗରେ ବହିଯାଉଥିଲା ।

କେତେବେଳ ପରେ ମୋର
ଚେତା ହେଲା ।
ମୁଁ ଖୋଜୁଥିଲି ରାସ୍ତା
ସେ ଉଡୁଥିଲା ସ୍ୱପ୍ନ ରଚି

ମୋ କୁନି ପୁଅ ମୋ
ଆଡକୁ ବଢ଼ାଇ ଥିଲା
ହାତ
ଧରିବାକୁ ଚେଷ୍ଟା
କରୁଥିଲା
ମୁଁ ପାଲଟି ଯାଇଥିଲି
ପଡୋଶୀ ଘର କାନ୍ଥରେ
ସାଇତା ପ୍ଲାଷ୍ଟିକ କଙ୍କି ।



# ଏଣ୍ଟୁଅ

ଏଣ୍ଟୁଅ ମୁଣ୍ଡ ଟୁଙ୍ଗାରି ଯେଉଁ ଆଡେ
ମୋର ଏକମୁଖି ଶୈଶବ ସେଆଡେ
ଧାଇଁବା ଥିଲା ଅନାହତ
ଏଣ୍ଟୁଅ ପଛରେ ସମସ୍ତ ଆୟୁଷ ।

ବାଉଁଶ ବୁଦା ମୂଳରେ ମୁଣ୍ଡ ଟୁଙ୍ଗାରି
ଜଣାଇଦେଲା ବେଳେ ଅସ୍ତିତ୍ୱ
ମୁଁ ଛନ୍ଦି ହୋଇଥିଲି
କଣ୍ଟେଇ କୋଳି ଗଛରେ
ସେ ବାଉଁଶ ଅଗରେ ତ
ମୁଁ ଖସି ପଡିଥିଲି କାଦୁଅରେ ।

ଏମିତି ଖେଳ
ହରଦମ ନାକେଦମ
ଏଣ୍ଟୁଅ ପିଛା କରିବାରେ ହିଁ
ପାଠଶାଠ ସମସ୍ତ କୌଶଳ ।
ଥରେ ସେ ମୁଣ୍ଡ ଟୁଙ୍ଗାରି ଦେଲେ
ପରୀକ୍ଷାରେ ପାଶ
ଖେଳରେ ଜିତାପଟ

କିଶୋରୀ ସାଥୀର ସାନ୍ନିଧ
ନାଟକରେ ରାଜା ଅଭିନୟ ।

ଏବେ ଏବେ ଉତ୍ତୀର୍ଣ୍ଣ
ପୌଢ଼ ବୟସରେ
ମନେପଡେ ଶୈଶବର ଖେଳ
ଏଣ୍ଟୁଅର ସ୍ମୃତି
ଅନବଧାରିତ ସତ୍ୟ ଯେମିତି
ସବୁ ମିଛକୁ ସତ
ଦୁର୍ନୀତି ମିଥ୍ୟାଚାର
ଧର୍ଷଣ, ସବୁ ଭିତରେ
ନିର୍ଭେଜାଲ ମଣିଷ ପଣିଆ
ଜାହିର୍ କରିବାକୁ ଲୋଡା
ଏଣ୍ଟୁଅର ସ୍ୱୀକୃତି
ମିଥ୍ୟାରତି ।

ଶୈଶବର ସରଳ ସାଥୀ
ଅଯାଚିତ ପୌଢ଼ତ୍ୱର
ଜଟିଳ ଜ୍ୟାମିତି ।



# ମନର ଅରମାରୁ

ମନର ଅରମାରୁ ଓହ୍ଲାଇଦେଲି
ପରସ୍ତ ପରସ୍ତ ଆସ୍ତରଣ
ଜଙ୍ଗଲ, ନଈ, ପାହାଡ, ସମୁଦ୍ର
ଝରଣା, ଧୁ ଧୁ ମରୀଚିକା
ବୟସର ଛାପ;

ଖୁବ୍ ସନ୍ତର୍ପଣେ ଶୈଶବର
କାନଭାସରେ ଫୁଟି ଉଠେ
ବଂଧୁତାର ହାତ ପ୍ରସାରିଛ
ଛୋଟ ଏକ ସ୍ମୃତିଚିତ୍ର
ସ୍ମୃତିପରି ମଖମଲ
ଝରଣାର ସ୍ପର୍ଶ ।

କାମନା ଗଛରେ ବାନ୍ଧିଛି
ସୂତ୍ର
ଧୈର୍ଯ୍ୟ ଓ ବିଶ୍ୱାସକୁ ଗଣ୍ଠିକରି
ଅପେକ୍ଷା
କିଶୋରୀ ଆସିବ
ନୀପବନର ବଂଶୀ ସ୍ୱନକୁ

ଅନୁସରି
ଉଜାଡ଼ି ଦେବ ଜୀବନ ଯୌବନ
ନିମ ଗଛର ଫୁଲପରି ।

ଗଛ ଯେଉଁଠି କଥା କୁହେ
ସେଠି ନୀରବ ଥାଏ ସମୁଦ୍ର
ସମୁଦ୍ର ଗର୍ଜି ଚେତାଇ ଦିଏ
ଅଧିକାର
ଗଛ ଚୁପ୍‌ଚାପ୍ କୁହେ
ଗର୍ଜନରେ ନଥାଏ ପ୍ରେମ
ନୀରବତା ହିଁ ଜୀବନ
ପ୍ରେମର ଓଁକାର ।

କାମନା ଗଛରେ ଦାନା ବାନ୍ଧେ
ଆଶା
ବନ୍ଧା ସୂତାରେ ଅଟକିଥାଏ
ମଖମଲି ସରୀସୃପ
ସ୍ମୃତିପରି ସ୍ୱପ୍ନ ପରି
ଜଡ଼ଚେତନା ଭିତରେ
ପ୍ରଣବ ଝଙ୍କାର ପରି ।

କାମନାରୁ କାମନା
ସଂକ୍ରମୁଥାଏ ସମୟ
ବୟସ ସୂତାରେ ଜଙ୍କ ଲାଗେ

ସମୁଦ୍ର ଗର୍ଜନ ଗଛକୁ
ପ୍ରୀତିଫୁଲ ମାଗେ ।

ସ୍ମୃତିଚିତ୍ରଟିଏ
ସାରାଟା ଜୀବନ ମୋର
ପିଛା କରିଥାଏ
ସମୁଦ୍ର ବାଲିରେ ପାଦଚିହ୍ନ
ଲିଭାଇ ସାରିବା ପରେ
କାମନା ଗଛରେ
ସୂତାଟିଏ ବାନ୍ଧେ ।

ମନର ଅରମାରୁ ଓହ୍ଲାଇ
ଆସେ ଜୁଆର
ମରୀଚିକା
ସ୍ୱପ୍ନ ଏବଂ ସ୍ମୃତି
ମୁହୂର୍ତ୍ତ ଟେକି ଧରୁଥାଏ
କାମନାର ଛତି ।

❖❖❖

# ସମୁଦ୍ର ଜଙ୍ଗଲ ବାହାରେ

ସମୟ ପଚାରେ-
ସମୁଦ୍ର ବା ଜଙ୍ଗଲ ବାହାରେ
ଜାଗାଟିଏ ଅଛି କି ?
ମନମୁଗ୍ଧକର, ପ୍ରୀତିପଦ
ସୁଲୁସୁଲୁ ବାଆର ସହର
ମୃତ୍ୟୁ ଓ ଅମୃତକୁ ଡେଇଁ
ଚନ୍ଦନ ଅନ୍ଧାର ।

ଗଛ ଉତ୍ତର ଦିଏ -
ସେଇ ଅନ୍ଧାରରୁ ମୋର ଯାତ୍ରା
ଛାତି ପଞ୍ଜରାରୁ ପିଚ୍‌କି ପଡେ
ଯେଉଁ ଦୁଃଖ
ସିଏ ମୋର ସଂଗୀତ
ବର୍ଷ ବର୍ଷର ଶିଉଳି ଲଗା
ମଲାରକ୍ତ ବସିଥିବା ଯନ୍ତ୍ରଣାରେ
ଗଢ଼ିହୁଏ ଯେଉଁ ସିନ୍ଦୁର ବିନ୍ଦୁ
ତାହା ତୁମ ପାଇଁ
ତୁମ ସୀମନ୍ତର ଶୋଭାପାଇଁ ।

ମୁଣ୍ଡ ଲାଲକରି ସମୟ ପୁଣି ପଚାରେ -
ସମସ୍ତ କୁରୁକ୍ଷେତ୍ରକୁ ଉଜାଡି
ପାଇଛି ଯେଉଁ ଶିଶୁର ରକ୍ତ
ସନ୍ତାନର ଶବ
ସିଏ ସୃତି ପାଲଟି ପ୍ରଶ୍ନ କରୁଛି
ସତ୍ୟକୁ-
ମାଟି ଉପର ବାସ୍ତବତାକୁ ।

ସମୟର ପ୍ରଶ୍ନରେ ଗଛ
ଥ' ହୋଇ ଚାହେଁ
ସମୟ ଖୁସିରେ ମୁଣ୍ଡ ହଲାଏ-
ସମୁଦ୍ର ବା ଜଙ୍ଗଲ ବାହାରେ
ଜାଗାଟିଏ ଅଛି କି ?
ପକ୍ଷୀ ପରି ଉଡିପାରୁ ନ ଥିଲି
ଗର୍ଭସ୍ଥ କରୁଥିଲି ତାର ଉଡାଣ
ସୁକୁମାର ପଣ ।

ନିଜକୁ ନିଜେ ଠକିବାରେ ମାହିର୍
ରଙ୍ଗ ବଦଳାଇବାରେ ଓସ୍ତାଦ୍
ବିବେକର କ୍ଷତକୁ ଉପଶମ
କରିବା ପାଇଁ ଦରକାର ପଡେ
ଝରି ନ ଥିବା ଲୁହ
ପାହାଡ ଶୀର୍ଷରେ ଫୁଟିଥିବା ଶତ ଶତଦଳ
କାହାର କୁହ ?

ଦୁଃଖଟିଏ
ମୁଣ୍ଡ ଟୁଙ୍ଗାରୁଥିଲା ସତ କଣ
ମିଛ କଣ ସମାଧାନରେ
ବୟସର ମଲମ ଲଗାଇ
ସାଉଁଳାଇ ଦେଉଥିଲା ଶହ ଶହ ବର୍ଷର କ୍ଷତକୁ
ନିଜକୁ ଦେଖିବା ଭିତରେ
ହଜିଯାଉଥିଲା ସମୟ ।

ଉଡିବା ଓ ଦୌଡିବା ବୟସ
ଅତିକ୍ରମୀ ମୁଁ ରାଜ ରାସ୍ତାରେ
ଶତ ଠକାମୀର ସାକ୍ଷୀପରି
ମୁଁ ରାଜା ମାହାରାଜ ସମ୍ରାଟ
ମୁଣ୍ଡ ଟୁଙ୍ଗାରି ... ହଁ ।
ମୁଁ ଦରିଦ୍ର ଭିଖାରୀ ନିଃସହାୟ
ମୁଣ୍ଡ ଟୁଙ୍ଗାରି ... ହଁ ।
ମୁଁ ହାତ ମୁଠାରେ ଧରିଛି ସୂର୍ଯ୍ୟ
ମୁଣ୍ଡ ଟୁଙ୍ଗାରି ... ହଁ ।
ମୁଁ ହିରଣ୍ୟଗର୍ଭ, ତ୍ରିଲୋକେଶ
ମୁଣ୍ଡ ଟୁଙ୍ଗାରି... ହଁ ।
ମୁଣ୍ଡ ଟୁଙ୍ଗାରି ଏଣ୍ଟୁଅ
ପାଲଟିବାରେ ମୋର ସମଗ୍ର ଜୀବନ
ଶୈଶବରୁ ପୌଢ଼
ଲମ୍ବା ମାରାଥନ୍ ।



# ଜୀବନ ଯୋଗରେ କବି

କବିତାରେ ଥାଏ ଏକ କାନ୍ଦ କାନ୍ଦ ଭାବ
ଲୁହର ଗୁମର
ବାଲ୍ମିକୀ ଲେଖନୀ ମୂନେ ରାମାୟଣ
ଶୋକ ଜରଜର ;
କ୍ରୌଞ୍ଚର ବିରହ ଜ୍ୱାଳା ରୂପନିଏ
ଆଧୁନିକ କଥା
ଏବେ କବି ଦୁଃଖ ସହ ହୁଏ କଥାବାର୍ତ୍ତା ।

କବିର କବିତା ସବୁ ଲୁହ ଢ଼ଳ ଢ଼ଳ
ଜୀବନ ଯୋଗରେ ଦୁଃଖ
ଶବ୍ଦ ସହ ଛକା ପଞ୍ଝା
ବାଘ ବକ୍ରୀ ଖେଳ
କେତେବେଳେ ଦୁଃଖ ଆଗ ଜୀବନ ପଛ
ତ କେତେବେଳେ ଦୁଃଖ ହିଁ ଜୀବନ ସକଳ ।

ଦୁଃଖରେ ଖୋଜିବା ପ୍ରେମିକାର କୋଳ
ମାଟିର କୋଳ ଏକାକଥା ନୁହେଁ
ସ୍ମୃତି, ପ୍ରେମ ଜୀବନର କବିତା ଖାତାରେ
ଛନ୍ଦୁ ଚରିଯାଏ ।

କବିଟିଏ ବସିଥାଏ ନିମଗ୍ନ ପାହାଡ ସେପାରେ
ପୋଖରି ହୁଡାରେ ବନିଶୀ ମନମୀନ ପ୍ରେମିକା କୋଳରେ
ବର୍ଷୁଥାଏ ଟୋପାଟୋପା ଶୀତଳ ହୃଦୟ
ଦୁଃଖର ସଙ୍ଗମରେ ପାରଙ୍ଗମ କବି
ବସନ୍ତକୁ ଡାକେ
ଫର୍ଦ୍ଦେ ନୀଳ ଆକାଶରେ
ଆଙ୍କୁଥାଏ ଶୂନ୍ୟତା
ଦରସିଝା ସ୍ୱପ୍ନ ଓ ବ୍ୟର୍ଥତା ।

ପାପମୟ ସମୟ ଅପେକ୍ଷା
ନିର୍ଭେଜାଲ ଅସମୟ ଭଲ
ଦୁଃଖର ବିହନ ବୁଣି କିଂପା ଚାହଁ
ସୁଖର ଫସଲ ?

ଈର୍ଷାଳୁ ସମୟ କେବେ ଦିଏନା ସୁଖ
ଅନ୍ଧାରୁଆ ଗଳିମାନଙ୍କରେ ଆକ୍ରମଣ କରେ
ନାରୀର ପ୍ରେମ ପରି ବହୁରୂପୀ ସ୍ୱପ୍ନ ସାଥୀରେ
ଦୁଃଖ ପୁରୁଣା ହେଲେ ପାଚିଲେ
ମହ ମହ ଜୀବନ
ଲୁଚକାଳି ଖେଳ ସରେ ନାହିଁ
ସରିଯାଏ ଜୀବନ ।

ନିଅଣ୍ଟିଆ ସଂସାରରେ ଅଚିହ୍ନା ଅତର ପରି
ବେଳେ ବେଳେ ବାସେ

ମୃତ୍ୟୁକୁ ସ୍ଥିର ରଖି ଦୂର ଆକାଶରେ
ଜୀବନ ଘୂରେ
ଦୁଃଖ ନ ଥାଏ, ବସନ୍ତ ହିଁ ଡାକୁଥାଏ
ଜୀବନ ବାହାରେ ।

କବିଟିଏ ଶୋଇପଡେ କ୍ଷଣେ
ଜୀବନରେ ହରଦମ ମରୁଥାଏ
ନାରୀର ହସ କାନ୍ଦ
ଦୁଃଖର ବ୍ୟୁହ୍ୟ ଭିତରେ
ଶୁଖି ଶୁଖିଯାଏ ଯେତେ ସ୍ୱପ୍ନ ଯେତେ
ଓଦା ଭାବ ପ୍ରବଣତା
ତାକୁ କୁହନା କବିତା
ଦୁଃଖର ଅଭାବି ବିକ୍ରିରେ ବଳି ପଡୁଥିବା
ନିରୀହ ଜୀବନ ସଳିତା ।

ଜୀବନ ଯୋଗରେ ଏବେ କବି
କଅଁଳ ଖରାର ଚଦର ପାରି
ଜୀବନକୁ ସକାଳ ମାଗିଛି
ବିରକ୍ତ କରନା
ଦୁଃଖ ଭିତର ମଞ୍ଚରେ ସାଇତା
ଅସମୟ ଭିତରୁ ସମୟ ଖୋଜୁଛି ।



# ବେଘର

ହ୍ୟୁମ ପାଇପ ଭିତରେ
ଖରାବର୍ଷା ଶୀତ
ସହର ଭିତରେ ସେହି
ତାଙ୍କର ଘର ;

ଦଶବର୍ଷ ଧରି
ହ୍ୟୁମ୍‌ପାଇପ୍ ଭିତରେ
ମୁହଁକୁ ବନ୍ଦ କରି ବାଉଁଶତାଟି
ଜିଲିଙ୍ଗିଯାଏ ଘର ପାଇଟିକୁ
କଏଉ ରାଜମିସ୍ତ୍ରୀ ।

ଅନେକ ଘର ତିଆରି ଥିବା
କଏଉ
ଅନେକ ଘରକୁ ଚକ୍‌ଚକ୍
ସଜେଇଥିବା ଜିଲିଙ୍ଗି
ଦୁଇ ମିଟର ହ୍ୟୁମ୍‌ପାଇପ୍‌କୁ
ଘର କରିଥାନ୍ତି ।
ସେଇଠି ଦୁଇଟି ଛୁଆର ଜନ୍ମ
ସେଇଠି ବୁଲା କୁତିର ଆଶ୍ରୟ;

ମ୍ୟୁନିସିପାଲିଟି ଯେଉଁଦିନ
କେଉଁ ରାସ୍ତାରେ ପକାଇବ ବୋଲି
ହ୍ୟୁମ୍‌ପାଇପ୍‌କୁ ଉଠାଇନେଲା
ସେଦିନ ବେଘର ହେଲେ
ଏଇ ପାଞ୍ଚ ପ୍ରାଣୀ ।

ବୁଲା କୁଡି ଚାଲିଗଲା
ପାଖ ଘର ଆଡଟାଳକୁ
କଏଉ ସ୍ତ୍ରୀ ପିଲାଙ୍କୁ ଧରି
ଅଧାଗଢ଼ା ଘର ଭିତରେ
ଆଶ୍ରା ନେଲା ।

କେଉଁ ଘର କାର ଚିରଦିନ
ସବୁଠିତ ଲୋକଙ୍କୁ
ବେଘର କରିବା ପାଇଁ
ଯୋଜନା
ଯେଉଁଠି ମନ ମାନିଲା
ସେଇଠ ଘର
ସେଇଠ ସଂସାର ।



# ଛାଇ

ଗଛ ଉପରେ
ଆକାଶ ତଳେ
ପକ୍ଷୀ ଉଡେ ।

ଛାଇରେ ଧୋଇହୁଏ ପାପ ।
ଛାଇ ଟିକିଏ ପାଇଁ ପ୍ରାରବ୍ଧ
ଶୂନ୍ୟବାସ ।

ଗଛ ତ୍ୟାଗର
ମହିମ୍ନ ଶ୍ଳୋକ
ଜଗତକୁ କୁହେ
ଯାହା ନେଇଛ
ଫେରାଇ ଦିଅ
କୃତଘ୍ନ ହୁଅନା
କୃତଜ୍ଞ ହୁଅ ସମୟର ।

ପକ୍ଷୀ ଉଡ଼େ
ନୀଡ଼ ବାନ୍ଧେ ଗଛରେ

ଗଛ ଗ୍ରୀଷ୍ମରେ ଜଳିଯାଏ
ଖୋଜୁଥାଏ ଛାଇ ଟିକିଏ ।
ପକ୍ଷୀ ଉଡୁଉଡୁ କ୍ଳାନ୍ତ
ଗଛ ବାକ୍‌ହୀନ
ଛାଇ ହଜିଯାଏ
ସମୟରେ ମଣିଷର ମଣିଷ ଭିତରେ ।



# ପରିଚୟ

ମାଟିରୁ ଆକାଶ
ଆକାଶରୁ ମାଟି
ପ୍ରଦକ୍ଷିଣ ବେଳେ
ମୋ ସଂଜ୍ଞା ବଦଳିଯାଏ
ଗାଁ ଦାଣ୍ଡର ଶିଶୁଙ୍କ କଳହ ପରି ।

ମୋ ସୌଭାଗ୍ୟର ଅସ୍ମିତା
ନିଅଣ୍ଟ ହୁଏ ଆକାଶ ମାପିବାକୁ
ମାଟି ତଳର ଦୁଃଖ ବୋଧେ
ସେଥିପାଇଁ ମୋତେ ଭିଡୁଥାଏ ପଛରୁ
ମୁଁ ବୁଝିପାରେନା ଗନ୍ତବ୍ୟ କଣ
ସତ୍ୟ କଣ
ଉପରକୁ ଉଠିବା ନା ତଳକୁ ଖସିବା
ବୁଝିପାରେନା ବୋଲିତ ଋତୁମାନଙ୍କର
ଖେଳ
ଏତେ ସବୁ ଝଂଜାଳ ।

ହାତ ମୁଠାରେ ପ୍ରାରବ୍ଧର ପାପ
ଭାଗ୍ୟରେ ଟାଙ୍ଗରା ପାହାଡର ପ୍ରେମ
ଋତୁମତୀ ସମୟର ଉଲ୍ଲାସ ଧରି

ମଜୁରିଆର ଝାଳ
ଜବାନର ରକ୍ତ
ଝରିବାରେ ସୁଖପାଏ ଯେଉଁ ମାଟି
ସେ ଚିର ତୃଷାର୍ତ୍ତ
ମୁଁ ମୁହଁ ଫେରାଇନିଏ ବୋଲିତ
ସେ ନିନ୍ଦା ପ୍ରଶଂସାର ଭେଦ ବୁଝିପାରେନା

ମୋ ନିରନ୍ନ ଅହଂକାର ପାଖରେ
ହଜାର ହଜାର ଶରଣାର୍ଥୀ
ଦୟନୀୟ ମୁଦ୍ରାରେ ସାହାଯ୍ୟ ପାଇଁ
ଶୃଙ୍ଗାରରତ ଚଢ଼େଇ
କର୍ମକ୍ଳାନ୍ତ ବାଟୋଇ
ଆଶ୍ରିତ ଓ ଅନୁଗୃହିତ ବୃଦ୍ଧ
ପରିତ୍ୟକ୍ତା ପ୍ରେମିକା
ଐଶ୍ୱର୍ଯ୍ୟମୟୀ ଗଣିକା
ଏତେ ସବୁ ଭିଡ ଭିତରେ ମୁଁ ଗାଉଥାଏ
ବିଫଳତାର ନାନାବାୟା ।

କିଛି କରି ନ ପାରିଲେ ବି
ଭୋଗିବାକୁ ଥାଏ ଯନ୍ତ୍ରଣା
ଅନ୍ୟମାନଙ୍କୁ ତ୍ରାଣ କରିବାର ଆସ୍ଫାଳନରେ
ସମୟର ଜତୁଗୃହରେ ବନ୍ଦୀ
ମୋର ବିଫଳତା
ମୋ ପ୍ରଗଲ୍ଭତା ମୋ ପ୍ରାରବ୍ଧ

ମୋ ଆସ୍ଫାଳନ ମୋ ଉଦ୍ଦେଶ୍ୟ
ପାଲଟିଯାନ୍ତି ଗଣିକାର ଗଜଦନ୍ତ ପଲଙ୍କ
ଯେଉଁଠି ସମୟର ବୀଟ ପୁରୁଷ ନିର୍ବିକାର ଭାବେ
ବିଶ୍ରାମରତ ।

ଭାଗ୍ୟର ଭୋଗବାଦରେ
ନୀରବ ଦ୍ରଷ୍ଟାଟିଏ ମୁଁ
ମାଟିରୁ ଆକାଶ
ଆକାଶରୁ ମାଟି ପ୍ରଦକ୍ଷିଣ ବେଳେ
ହରାଉଥାଏ ମୋର ପରିଚୟ ।



## ଅନ୍ତିମ ସତ୍ୟ

ଯେଉଁ ବାଟରେ ପାଦ ଯାଉନା କାହିଁକି
ମାଟି ତଳ ହିଁ ଗନ୍ତବ୍ୟ
ଗୋଟିଏ ବାଟ ସମସ୍ତଙ୍କର
ପ୍ରଥମେ ସେ ଯାଏ ବୋଲି ତ
ପାଦପ ।

ଗଡାଣି, ଉଠାଣି, ତଳ, ଉପର
ଯେତେ ବାଗରେ ଚାଲୁ ବାଟୋଇ
ପଥ କିନ୍ତୁ ନିର୍ବିକାର
କୋଉବିଶ୍ୱାସ ନେଇ ବାଟୋଇ
ଆଗାଏ ଜଣାପଡେନା
ଘୋଡେଇଥିଲେ ମଧ୍ୟ ଲକ୍ଷ୍ୟ
କୁହୁଡି ଭିତରୁ ଉବୁକି ଉଠେ ସୂର୍ଯ୍ୟ

ମଡା ବାଟରେ ବାଟୋଇ ଚିରଦିନ
ଅମଡା ବାଟରେ ପାଦପ ଆୟୁଷ୍ମାନ
ନୂଆ ଏକ ସତ୍ୟ ଆବିଷ୍କାର
ନୂଆ ଏକ ପଥ ଆବିଷ୍କାର
ଯା ଫଳରେ ସଭ୍ୟତାର ଜୟଯାତ୍ରା
ପାଦପ ଦ୍ୱାରା ପୂର୍ବ ନିର୍ଦ୍ଧାରିତ ।

ପଥ ମିଛ ପଥିକ ମିଛ
ପାଦ ମିଛ ପାଦପ ମିଛ
ଶହର ନଈ ପହଁରା ପରି
ତୃତୀୟ ପାଦରେ ବିଶ୍ୱ
କେବଳ ଚାଲିବା ସତ
ମାଟି ଦରାଣ୍ଡିବା ଆହୁରି ସତ
ଆପେକ୍ଷିକ ଦୃଷ୍ଟିରେ
ପାଦପ ଅନ୍ତିମ ସତ୍ୟ ।



# କସ୍ତୁରୀ ମୃଗର ବନ

ଦକ୍ଷିଣ ଦିଗରେ ମୃତ୍ୟୁର
ନାଚ ଦେଖିବି କଣ
ତୁମର ସୁନ୍ଦର ସୁଠାମ ହସ
ବର୍ଣ୍ଣବୋଧର ଅରଣା ମଇଁଷି
ଅଗଣା ଭିତରେ ଭାରି ସୁଧାର

ଆଦିମ ଯୁଗର କଥାରେ
ତମର ନିଘା ନ ଥାଏ ସଜନୀ
ଭଞ୍ଜାଙ୍କୁ ଛାଡି ତମେ
ଆଲବମ ଯୁଗରେ
ଏବେ ଢେଉ ଢେଉକା ପ୍ରେମରେ
ଉବୁଟୁବୁ ;
ହୃଦୟ ଦେବାନେବା ଶସ୍ତା ହେଲାଣି
ଜ୍ୟୋତ୍ସ୍ନା ପରି ପ୍ରେମ
ପଦ୍ମ ପରି ମନ
ସବୁ ସହର ବଜାରେ ଉପଲବ୍ଧ

ପଦ୍ମାବତୀ ଛାପ ନିତମ୍ବ
ଲାବଣ୍ୟବତୀ ହସ

କାଦମ୍ବରୀ ଦେହ
ଲୋଲିତାର ପ୍ରେମ
ଗୋଟିଏ ଗୋଟିଏ ବିଜ୍ଞାପନ

ବାରମାସକୁ ତେର ପ୍ରକାର ହୃଦୟ
ଦର୍ପଣ ଠାବ କରି ପାରେନା ପ୍ରତିବିମ୍ବ
ଆସ ଖୋଜି ଯିବା
ସେଇ ଅପେରା ଫଗୁଣ
କସ୍ତୁରୀ ମୃଗର ବନ ।



# ନିଜ ସିଂହାସନ

ଗଛ ହିଁ ସୂର୍ଯ୍ୟାସ୍ତ
ସେ ପୁଣି ସକାଳ
ଇଡା ପିଙ୍ଗଳା ନାଡୀ ଖେଳ ।

ପତ୍ର ଖସେ ପତ୍ରଯୋଡେ
ଜଙ୍ଗଲ ଉଜୁଡି ଗଲେ
ଦନେଇର କିସ ଯାଏ ?

ହସିଲେ ଗଛ
କାନ୍ଦିଲେ ଗଛ
ନଷ୍ଟା ପାହାଡ ଓ
ଗଢ଼ି ଉଠୁଥିବା ସହର
ବୃଦ୍ଧା ବେଶ୍ୟା ପରି ସୁନ୍ଦର ।

କବିଟିଏ ବାଟବଣା ହେଉଥାଏ
ଖୋଜୁଥାଏ ଜୀବନର କଅଁଳ ମୁହୂର୍ତ୍ତ
ଶବ୍ଦ ନ ଦିଏ ଧରା
ସ୍ମୃତି ପରି
ପ୍ରତ୍ନତତ୍ତ୍ୱ ବିଭାଗର ଅପରିଚିତ ମୂର୍ତ୍ତି ପରି
ଜୁଆର ତଳ ଚୋରା ବାଲି ପରି

ନଈକୂଳେ ଗଛ ମୂଳେ
ଅଜଣା ପକ୍ଷୀଟିଏ ଗାଉଥାଏ
ମନଭୁଲା ଗୀତ
ଘର ମୁହାଁ ବିଚଳିତ ମନ ;
ଦନେଇ , ଉପୁଡା ଗଛ ଚେରରେ
ବସି ସଜାଡୁଥାଏ ନିଜ ସିଂହାସନ ।



# ଗଛ କେବେବି ବଦଳିନି

କାକର ବତୁରା ମୁହଁ, ଗଛର
ଆକାଶର ଆଇନାରେ
ପ୍ରତିବିମ୍ବ ଅନେକ ଯୁଗର ।

ମଣିଷ ପାଇଁ କେବେବି ଗଛ ବଦଳିନି
ତାର ଚେହେରା ଗଢ଼ଣ ଓ
ସବୁଜ ପୋଷାକ ସବୁ ଯେମିତି
ସୁନ୍ଦର , ଆଉ କୋଉଠି ନାଇଁ ।

ଅନେକ ପକ୍ଷୀ ଆସନ୍ତି
ସେଇ ଦୃଶ୍ୟରେ ଅବଗାହି
ଗୀତ ଗାଇ ଗାଇ ଦୂରକୁ
ଗଲାବେଳେ କୁହନ୍ତି
ନା, ଏମିତି ନିର୍ଭୟ ଆଶ୍ରୟଟିଏ
ନ ଥିଲା କୋଉଠି କୋଉ ଜନ୍ମରେ ।

ମଣିଷ ଭିତରେ ରକ୍ତପାତ
ଦେଖିଛି ଗଛ, ଭୁଲିଛି
ସ୍ନେହ ପ୍ରେମର ଗଜଲ
ଆକାଶମନସ୍କ ଚାହାଁଣୀ
ସବୁବେଳେ ପ୍ରେମ ବିଭୋର

କେବେ କେବେ ରାତିରେ ହଂସ ଶିକାର
ଦିନରେ ବାଘ ଶିକାର
ନଈ ନାଳର ଜଳ ରକ୍ତ ସର ସର
ପକ୍ଷୀ ଗଛ ଡାଳରୁ ଦେଖେ
ଝର୍ଣ୍ଣା ଜଳରେ ଲାଲେ ଲାଲ
ସ୍ମୃତି କିମ୍ବଦନ୍ତୀ
ଛାତି ତଳ ବଗିଚାରେ ଡବଡବ
ଫୁଟୁଥାଏ ଲାଲ ମନ୍ଦାର
ମଉଳିଯିବା ବେଳେ ଫୁଲ
ମଣିଷ ପଚାରେ କିଏ କାହାର ?

ପକ୍ଷୀ ଫେରାର ବସା ଛାଡ଼ି
ଆକାଶ ନୀରବ
କାକର ଭିଜା ଗଛର ଚେହେରା
ଆଇନା ଧରି ପାରୁନି

ମାଟିରୁ ଆକାଶ ଯାଏ
ଗଛର ବାହୁନା ବର୍ଷିବା ପାଇଁ
ଶବ୍ଦ ନିଅଣ୍ଟ ପଡୁଛି
ମଣିଷ ପାଇଁ
ଗଛ କେବେବି ବଦଳିନି ।



# ହାୟ କବିତା, ଇଏ କବିତା

କବିତା ପାଇଁ ସେ
ଯୌବନକୁ ବାଜି ଲଗାଇଥିଲା
ଗାଁର ଅଲୀଅଳି ଝିଅ
ସହରରେ ଗୁଜବ ପାଲଟି ଥିଲା;

ନବୀନରୁ ପ୍ରବୀଣ ସବୁ କବିଙ୍କର
ସାନ୍ନିଧ୍ୟରେ ଉକୁଟି ଉଠୁଥିଲା
ବୟସର ମଧୁରତା
କାଳଜୟୀ କବିତା ।
କିଏ କହୁଥିଲେ ଉଛାଡି ଦେଲା
ବୟସ, ସମୁଦ୍ର ଲହଡି ଭଙ୍ଗାରେ

କିଏ କହିଲେ ଅନୁଭୂତି ସାଉଁଟି ସାଉଁଟି
ଭିଜି ଯାଉଥିଲା ଅଦିନିଆ ବର୍ଷାରେ
ଇର୍ଷୁକ ସମୟ ହିଂସିକା ଆଖି
କହୁଥିଲା ବାର ବନିତା
ସେ ଜାଣିଥିଲା ତାହାହିଁ କବିତା ।

ବର୍ଷୀୟାନ କବି ତାପାଇଁ ରାତି ରାତି
ଉଜାଗର ତାରା ଗଣୁଥିଲେ
ପତ୍ରିକାର ସମ୍ପାଦକ ପୃଷ୍ଠା ପୃଷ୍ଠା
ଅଦିନିଆ ବସନ୍ତ ରଚୁଥିଲେ ;

ସମୟ ଝୁଲି ଝୁଲି ଝୁଣି ଚାଲିଥିଲା
ବୟସ
ଶବ୍ଦ ସବୁ ରେକେଟୁଥିଲେ ଶୃଙ୍ଖଳା ଥନ
କବିତା ଝରୁଥିଲା ହାଓ୍ୱାରେ ହାଓ୍ୱାରେ
ରାତି ସାରା ବଉଳ ବାସ୍ନାରେ
ଜୀବନ ଆନନ୍ଦମୟ ଗତିରେ .
ନିଶ୍ଚିନ୍ତ ଆକାଶ ନିସ୍ପନ୍ଦ ସମୁଦ୍ର
ତାର ପ୍ରତିଟି ମୁଗ୍ଧ ଇଶାରାରେ ।

କବିତା ଝରୁଥିଲା ମଧୁପରି ଯଉବନର
ସ୍ତାବକ ଆକାଶ ଝୁଲି ପଡିଥିଲା ହାତ ପାହାନ୍ତାକୁ
ଚାହିଁଲେ ତୋଳି ପାରିବ ତାରା ଫୁଲ
ପ୍ରତି ତାରା ଶବ୍ଦ ସାଜି ନୂଆ କଥା କହୁଥିଲେ
ପୁରୁଣା ଢଙ୍ଗରେ
ରାତିଦିନ ଚୁର୍‌ଚୁର୍ ସ୍ମୃତି ପରକିୟାରେ ,ପ୍ରାଣରେ
ରାଗ ବେହାଗ
ନିଘା ନ ଥିଲା ଦୁନିଆର, ବସନ୍ତର
ପ୍ରେମରେ ବିଭୋର
ହିସାବ ହୋଇନି କିଏ ଆପଣା କିଏ ପର

ଯୌବନର ଖୋଲାଦ୍ୱାର ଦେଇ ଅନୁପ୍ରବେଶ କରନ୍ତି
ସ୍ତାବକର ଦଳ
ଜୀବନ ପାଲଟିଯାଏ ସମୁଦ୍ରର ବ୍ୟଥା
ଆକାଶର କଥା ;

ସମୁଦ୍ର ପରି ଫିଙ୍ଗି ପାରେନା ଦୂରକୁ
ଆକାଶ ପରି ଅପହଞ୍ଚ ହୋଇପାରେନା
ପ୍ରବଞ୍ଚନାର ଶବ୍ଦକୁ ପଣତ ଘୋଡାଇ
କହୁଥାଏ ହାଏ କବିତା
ଇଏ କବିତା !!



# ଅଭିମନ୍ୟୁ

ସମ୍ପର୍କର ବ୍ୟୁହରେ
ପଢ଼ିହୁଏ ଅସ୍ତଗାମୀ ସୂର୍ଯ୍ୟର କବିତା
ସମୟର ରକ୍ତନଦୀ ପାରି ହେବାକୁ
ଲୋଡାହୁଏ ପ୍ରିୟପୁତ୍ର ଶବ ।

ଆକ୍ରାମାକ୍ତା ଜୀବନ
ପରିଧାନୀ ଯନ୍ତ୍ରଣାର ପାଟ
ଗାଉଥାଏ ଦୁଃଖର ଗଜଲ
ତ୍ୟାଗର ଫସଲ ଉଜାଡି
ମାଡିଯାଏ ହିଂସ୍ର ପଙ୍ଗପାଳ ।

ଏମିତି ଦୁଃସ୍ୱପ୍ନର ଗହଳିରେ
ବାରିହୁଏନି ସମ୍ପର୍କର ଧାର
ସୁଦୂର ଅପରିଚିତ ମଣିଷଟିଏ
ବଢ଼ାଇ ଦିଏ ପ୍ରୀତିପୂର୍ଣ୍ଣ ହାତ
ସ୍ମରଣ କରାଇ ଦିଏ
ସମସ୍ୟାକୁ ସମ୍ମୁଖୀନ ହେବାର
ଗୋପନ କୌଶଳ ।
ପୁଣିଥରେ ସଂଶୟର ବ୍ୟୁହ୍ୟ ଭେଦି
ଛିନ୍ନକରେ ଜୀବନ ଶୃଙ୍ଖଳ ।

ଅଭିମନ୍ୟୁ ମାନେ ତ ମଣିଷ
ଯିଏ ମାଡି ଚାଲେ ଦୁର୍ଦ୍ଦମନୀୟ
କିନ୍ତୁ ଫେରିବାର ବାଟ
ବନ୍ଦ କରି ସାରିଥାଏ ଅଦୃଷ୍ଟ
ଚିନ୍ତା କାହିଁକି ବନ୍ଧୁଟିଏ
ବିରୋଧ କଲେ
ଉନ୍ମୁକ୍ତ କଂସା କବାଟ
ରୁଦ୍ଧ ହୋଇଗଲେ ।

ମଣିଷ ଚକ୍ରବ୍ୟୁହରୁ ମୁକୁଳି ଗଲେ
ବିଜୟ
ଲହୁଲୁହାଣ ହେଲେ
ଅଭିମନ୍ୟୁ ।

ଅଭିମନ୍ୟୁ ହେବା ମଣିଷର
ଭବିତବ୍ୟ
ଆପେ ମରି ପିତୃପୁରୁଷଙ୍କୁ
ନୂଆ ବାଟ ଦେଖାଇବା
ଜୀବନର ସର୍ବଶେଷ
ବ୍ୟାକରଣ ।



# ବର୍ଷା ବନ୍ଦାପନ

ବର୍ଷା
ଭୋଗ ଓ ଅନିଭୋଗର ଇତିହାସ
କୁଢ଼ କୁଢ଼ ସ୍ୱପ୍ନ ଆଉ ସ୍ମୃତିର ସୋପାନ
ପ୍ରଥମ ପ୍ରେମିକା ପରି
ଛଳଛଳ
ବିରହ ବ୍ୟଥାତୁର ଜୀବନରେ
ନିର୍ଜନ ବ୍ୟାକୁଳ ।

ଏଇ ଯେ ଆସୁଛି ବର୍ଷା
ପ୍ରେମିକାର ଅଭିମାନ ନେଇ
ଏଇ ଯେ ଆସୁଛି ବର୍ଷା
କଦମ୍ବର ରୋମାଞ୍ଚ ଫୁଟାଇ
ଜୀବନରେ ବର୍ଷା ଅନିର୍ବାର୍ଯ୍ୟ
ପ୍ରେମପରି, ଦୁଃଖପରି
ସ୍ୱପ୍ନର ବିହନ ବୁଣି
ମହାବୃକ୍ଷ ଉପୁଜାଇ
ପ୍ରତି ଜୀବକୋଷରେ
ଚିହ୍ନା ଚିହ୍ନା ମାଟିର ନିଶ୍ୱାସ
ମୁଗ୍ଧ ପଲ୍ଲବନ

ବର୍ଷା ଆଣେ
ସ୍ନାୟୁରେ ସ୍ନାୟୁରେ
ସୁଖ ଭିଜା ମାଟିର ସ୍ପନ୍ଦନ ।

ବର୍ଷା କାହିଁ ବର୍ଷା କାହିଁ
ପଚାରନ୍ତି ନଗ୍ରଜନ
ଗଛବୃଛ ସ୍ୱପ୍ନ ଦେଖନ୍ତି
ଅନାହୂତ ବର୍ଷାଲୁ ଶ୍ରାବଣ
କିଏ ଦିଏ ବର୍ଷାର ସମ୍ବାଦ
ଲଙ୍ଗଳା ପିଲାର କାଗଜ ଡଙ୍ଗା
ପାରିଷଦଙ୍କ ମିଛ ହସ
ପିମ୍ପୁଡି ଓ ଗୁଣ୍ଡୁଚିଙ୍କର
ଧୂଳିସ୍ନାନ । ବସାହୀନ କାକର ରମଣ ;
କିଏ କହେ ବର୍ଷାମାନେ
କାମନାର ଦଗ୍ଧ ନୀପବନ ( ? )

ଏଇ ଯେ ଆସୁଛି ବର୍ଷା
ଓଦା କରି ଫଟା ଓଠ ଧରିତ୍ରୀର
ଶୁଖିଲା ଚଟାଣ
ଶିଶୁଟିଏ ନାଚି ନାଚି
ଗାଁ ଦାଣ୍ଡେ ଭରିଦିଏ
ଉଲ୍ଲାସ ଚନ୍ଦନ ।



# କାଳିଦାସ

ଜଙ୍ଗଲକୁ ଗଲେ ମନେ ପଡ଼ ତୁମେ
ପାହାଡ଼ ଶୀର୍ଷ । ବିରହୀଯକ୍ଷ ମେଘ ରାତିର କବିତା
ଓ ଉଜ୍ଜୟିନୀର ଆତୁରତା ।

ଡାଳ ସହିତ ନିଜେ ଖସିଯିବାକୁ ଚାହେଁ କବି
ଗଛ ସହିତ ବଂଧନ ତୁଟାଇ
ସମାଧିସ୍ଥ ହୁଏ କିମ୍ବଦନ୍ତୀ ;

ରାଜକନ୍ୟାର ବିଦ୍ରୂପ
ଗୋଟିଏ ଆଙ୍ଗୁଳି ପ୍ରତିବଦଳରେ
ଦୁଇଟି ଆଙ୍ଗୁଳି ଦେଖାଇବାର ପ୍ରତିବଦ୍ଧତା କିମ୍ବଦନ୍ତୀର ମଞ୍ଜି ।

ଗୋଟିଏ ଆଙ୍ଗୁଳିରେ ସମୟକୁ
ଆରଟିରେ ସମାଜକୁ
ସ୍ଥିର, ହତଚକିତ କରିଦିଏ ଯେ-
ଉଦ୍ଧତା ରାଜକନ୍ୟାର ମଲ୍ଲୀମାଳ
ଖସିଆସେ ତା ଗଳାରେ ।

ଗଛ ସହିତ ନିଜେ କଟିଯିବାର
ଆସ୍ପର୍ଦ୍ଧା କରେ କବିଟିଏ
ଡାଳ କାଟୁ କାଟୁ ପ୍ରତିଟି ସୁନ୍ଦରୀ କନ୍ୟାର
ମନକୁ କତୁରୀ ଦିଏ ।



# ଆଖି

ତମକୁ ଦେଖିଛି
ଲୁହ ଢ଼ଳ ଢ଼ଳ, ଗଭୀର ଶୀତଳ ଆଖି
ଅରଣ୍ୟର ସ୍ୱପ୍ନ ପରି
ଝଡର ବଗିରେ ବସି ଦେଖୁଛି
ପଂଝୁରୀ ଭିତର ପକ୍ଷୀ ।

ଝରାପତ୍ରର ଚିଠିରେ ପ୍ରେମର ସାଉଁଳା
ଛନ୍ଦିଦିଏ ହୃଦରେ ଆହୁଲା
ପବନ ଫିସଫିସ୍ କୁହେ
ଋତୁର ଗୀତରେ ଚଢ଼େଇ ମନ ମୋହେ ।

ଦିନେ ଦିନେ ଭାବେ
ଉହୁଂକି ଯିବି ଆକାଶକୁ ସ୍ୱପ୍ନ ଧରି
ଅଧୀର ଆବେଗର କାନି ପଣତରେ
ମଳୟର ଠେଲାରେ
ମଲ୍ଲୀଫୁଲ ପରି ।

ତମ ଆଖିରେ
ପହଁରିବାକୁ ମନ ଯେ
କାଳେ ଗଭୀର ଜଳରେ ହରାଇବି ଥଳକୂଳ ।



## ମଲ୍ଲୀମାଳ

ଗଛପରି ପଲ୍ଲବିତ ଆମର ସ୍ୱପ୍ନ
ଢ଼ଳ ଢ଼ଳ
ସବୁଜ ସବୁଜ
କେବେ କଅଁଳ ସୂରୁଜ
କେବେ ଶ୍ୟାମ ପାଇଁ ମଲ୍ଲୀମାଳ ।

ଥୁଣ୍ଟା ଗଛରେ ପକ୍ଷୀଟିଏ ଚଞ୍ଚୁ ସଳଖେ
ଉଡିଯାଏ, ନୂଆ ବସାକରେ
ଜୀବନର ମନ୍ତ୍ରପଢ଼ି ଶାବକଙ୍କୁ ଉଡାଣ ଶିଖାଏ;
ଚାରିଆଡେ ମହମହ ବିଛାଡି ପଡେ
ସ୍ୱପ୍ନ, ଆକାଶ ଭର୍ତ୍ତି ଖେଳ ପଡିଆ
ଖଣ୍ଡିଉଡା ଶାବକ
ମା' ଆଖିରେ ସ୍ୱପ୍ନ ଅନବରତ ।

ଗଛ ଦେଖେ, ଅନୁଭବେ
ହସେ, ପକ୍ଷୀ ବିଛାଡିପଡେ
ଡେଣା ମେଲାଇ ଆକାଶକୁ ମାପେ
ପୁଣି ଚୁପ୍‌ଚାପ ବସେ
ଚଞ୍ଚୁ ଘସେ, ଦର ପାଚିଲା ଫଳ ଚାଖେ ।

ଗଛ ଚାହିଁଥାଏ ଆକାଶକୁ
ଦୃଷ୍ଟି ପହଁରାଇ ଆଣେ ପାଦରେ
ନରମ ନରମ ମାଟି
ମହ ମହ ମହକେ
ଜୀବନ ମନ୍ତ୍ରରେ ଛଳଛଳ
କେବେ ଲାବଣ୍ୟବତୀ ତ କେବେ
ଶ୍ୟାମ ପାଇଁ ମଲ୍ଲୀମାଳ ।



## ବଞ୍ଚିବାର ନୂଆ ସୂତ୍ର

ଚାଲ ଅରଣ୍ୟ ଧାରକୁ ଫେରିବା
ନଈର ସ୍ରୋତ ଦୂଷିତ ହେଲାଣି
ଅପରାଧୀଙ୍କ ମେଳଣରେ ପଡୁଛି ଉଠୁଛି
ଦିଗନ୍ତ
ସମୁଦ୍ର ଖୋଜୁଛି ମଧୁର ପାଣିର ଉତ୍ସ
ଆକାଶର ଏକାକୀ ତରାଟି ପାଂଶୁଳ ଉଚ୍ଛନ୍ନ
ଜୀବନ ପ୍ରତି ବଶଂବଦ ମୁହୂର୍ତ୍ତ
ଏବେ ଅପସୃୟମାନ
ଅରଣ୍ୟ ହିଁ ଏକମାତ୍ର ବିକଳ୍ପ ।

ନୂଆକରି ଲାଳନ କରିଥିବା ଶବ୍ଦ
ଦୁର୍ବୋଧ ହେଲାଣି
ପ୍ରଗତି ମଇଦାନରେ ଅଣନିଃଶ୍ୱାସୀ ଆତ୍ମା
ସ୍ୱପ୍ନ ଦେଖାରେ ଅତିଷ୍ଠ
ମଲ୍ଲୀ ଫୁଲ ପରି ସ୍ମୃତିମାନେ ବିଛାଡି ଦିଅନ୍ତି ବାସ୍ନା ତ
ନୀରବତା ହିଁ ଜଣାପଡେ ପ୍ରତିବାଦ

ବାଦୀ ପ୍ରତିବାଦୀ ଉଭୟେ ଏକ ଦଳ ଭୁକ୍ତ
ନଈକୂଳରେ ପୋତା ସରିଛି ଗୋଟିଏ ପତାକା

ଠୁଳ ହୋଇଛନ୍ତି କାନ୍ଧ କାନ୍ଧ ଆମ୍ଭମାନେ
ତାଙ୍କୁ ସଂଖୋଳିବାକୁ ନିର୍ଭୟ ହାତ ଦରକାର
ଭାତ ଦରକାର
ଅଳୀକ ପ୍ରତିଶ୍ରୁତି ବିଷାକ୍ତ କରିସାରିଲାଣି
ପରିବେଶ
ଅଶ୍ଳୀଳ ମହାନାଟକର ଦୃଶ୍ୟରେ ବଂଦୀ
ଶ୍ରୋତା, ଜନତା, ନେତା ଓ ତ୍ରାଣକର୍ତ୍ତା

ଅନୁରାଗର ଲଳିତ ଫର୍ଦ୍ଦରେ
ପୁଣିଥରେ ଲେଖିବାକୁ ହେବ ପ୍ରେମର କବିତା
ନଈର ସ୍ରୋତ ଦୂଷିତ
ସମୁଦ୍ର ଅଶାନ୍ତ
ଆକାଶ ଅପେକ୍ଷାରତ
ଚାଲ ଅରଣ୍ୟକୁ ଫେରିବା
ବଞ୍ଚିବାର ନୂଆ ସୂତ୍ରରେ କବିତା ରଚିବ ।



# ତଳ

ଯେତିକି ଦେଖିହୁଏ ନାହିଁ
ସେତିକି ତଳ
ନାରୀର ନିଭୃତ ଅଞ୍ଚଳ
ସେତିକି ମାତ୍ର ନୀରବତା
ସେତିକି ମାତ୍ର
କୋଳାହଳ ।

ନଚିକେତା ଭେଦିବାକୁ ଚାହେଁ
ଜୀବନ ମରଣ ରହସ୍ୟ
ସବ୍ୟସାଚୀ ମାଛର ନିରୀହ ଆଖି
ଜମାଟବନ୍ଧା ଅନ୍ଧକାର ଭିତରେ
ଅରଣ୍ୟରେ ଅଦ୍‌ଭୁତ ଶିକାରୀ ।

ମଞ୍ଚ ଭିତରେ ଶୋଇଥାଏ ରାତି
ଝିଙ୍କାରି ଗାଉଥାଏ ଆଶାବରୀ
ଜଳାଶୟ ଚାରିପଟେ ହରିଣଙ୍କ ଭିଡ
ବାଘ ରାଜା ପାରିଧିରେ
ରାଣୀଙ୍କର ଅଣ୍ଟା ତଳେ ନିର୍ଜନ ଦରଜ
ଯାହା ଦେଖିହୁଏ ଉପର

ଯାହା ଦେଖି ହୁଏନା ତଳ
ତଳୁ ଉପରକୁ ଉଠ ବା
ଉପରୁ ତଳକୁ ଖସ ସବୁ ଏକା
ଶାପ ସିଡି ଖେଳ ।

ରାଣୀଙ୍କ ଦରଜ ପାଇଁ ଲୋଡାହୁଏ
ଶଠ ନାୟକ
ଗଣ୍ଡା ଶିଙ୍ଘ, କୁମ୍ଭୀର ଛାଲ, ବାଘୁଣୀର କ୍ଷୀର ।
ତଳେ ଥାଆନ୍ତି ମାଟି ମୁଣ୍ଡ ହଜାରେ
ଯା' ଉପରେ ଅତି ସହଜରେ ପାଦ ଥାପି
ଉପରକୁ ଉଠିହୁଏ
ଉପରକୁ ଥରେ ଉଠିଲେ ତଳ ଦିଶେନା
ମାଟିମୁଣ୍ଡ ମାଟିରେ ରଙ୍ଗୁଥାଏ
ମୁଣ୍ଡ ଶିଡିରେ ପାଦଦେଇ ଚଢୁଥାଏ
ଜଣେ ଉପରକୁ
କେତେବେଳେ ନାୟକ ତଳେ
ତ କେତେବେଳେ ନାୟିକା
ରାଣୀଙ୍କ ନିର୍ବିବନ୍ଧ ହୁଗୁଳା ହୁଏ
ତଳକୁ ଚାହିଁଲେ ।

ରାଜା ମୁଣ୍ଡ ପାହାଚରେ ପାଦ ଥୋଇ
ସବା ଉପରକୁ ଉଠିବାର ପ୍ରଚେଷ୍ଟାରେ ଲହୁଲୁହାଣ
ରାଣୀ ତଳକୁ ତଳକୁ ଓହ୍ଲାଇ ସବାତଳ ଆସନରେ
ସମାସୀନ ।

ତା'ପରେ ମୃତ ସାଗର ସନ୍ତରଣ ବା ମୁକ୍ତା
ଆହରଣ
ଏକାକଥା ।
ଯେତିକି ଦେଖିହୁଏ ନାହିଁ ସେତିକି ତଳ

ପ୍ରତି କଥାରେ ନାୟକ ଥାଏ ନାୟିକା ବି
ଶିଖର ଥାଏ ତଳ ବି
ତା'ପରେ ରାତିର ପାରିଧି, ଅରଣ୍ୟରେ
ଜଳକ୍ରୀଡା
ଏକାକଥା ।

ରାଣୀଙ୍କ ଉପଶମ ପାଇଁ ଅଜବ ଚିକିତ୍ସା
ଯେତିକି ଦେଖିହୁଏ ନାହିଁ ସେତିକି ତଳ
ରାଣୀ ହଂସପୁର
ଯେତେ ନୀରବତା ସେତେ କୋଳାହଳ ।



## ଜୀବନ ଛନ୍ଦ

ହୃଦୟରେ ନଈଟିଏ ହରଦମ୍
ଗଛରେ ପକ୍ଷୀଟିଏ ତମାମ୍ ସମୟ
ଆସୁଥାଏ ଯାଉଥାଏ ସ୍ମୃତି ସ୍ମୃତି ଲାଗେ
ମୁହୂର୍ତ୍ତର ଭାବନାରେ ବସାବାନ୍ଧିଥାଏ ।

ସ୍ମୃତି ଉଙ୍କୁଡିଗଲେ ନଈ
ପରାଣ ଛାଡିଲେ ପକ୍ଷୀ
ନଈକୁ ବେଢ଼େଇ ମାଟି
ରଚୁଥାଏ ଭୂମି ଓ ଭୂଗୋଳ
ପକ୍ଷୀଟିକୁ ଆଶ୍ରାକରି ଗଛପଢ଼େ ପ୍ରେମର ଗଜଲ ।

ସ୍ମୃତି ଯେବେ ମୁହୂର୍ତ୍ତର ଭୋଗ କରେ
ଫୁଟିଉଠେ ମଲ୍ଲୀର ଗଜରା
ଜୀବନର ମଧୁଛନ୍ଦ ଧୋଇଦିଏ ପ୍ରେମର ଅଗଣା ।

ହୃଦୟରେ ନଈଟିଏ ଆବେଗରେ
ଉଚ୍ଛୁଳା ଉଚ୍ଛୁଳା
ଆକାଶରେ ସ୍ୱପ୍ନର ବୋଇତ
ଗଛ ସାରା ପକ୍ଷୀଙ୍କର ମେଳା ।



# ଅଫେରା ଫଗୁଣ

ଜଙ୍ଗଲରେ ବାଘ ମାତିଲେ
ତୁମେ ଆସ
କନକନ ହରିଣୀପରି ଚାହାଁଣୀ
ଚମ୍ପା ଫୁଲ ହସ ।

ଅଫେରା ଫଗୁଣ ପରି ତୁମ ପ୍ରେମ
ବ୍ରାହ୍ମଣୀର ଛୁଆଁ
ସ୍ମୃତିମୁଗ୍ଧ ଦିଗନ୍ତରେ
ଉଡୁଥିବା ଶୁଭ୍ର ଗେଣ୍ଡାଳିଆ

ଏବେ ତୁମ ଯୁଗ ଗଲାଣି, ସଜନୀ
ଆଲବମ୍ ଯୁଗର ମାର୍କେଟରେ
ସ୍ତନ ଆଉ ନିତମ୍ବ ବିପଣୀ

ହୃଦୟ ଦେବା ନେବା ଅତି ଛାର କଥା
ଜ୍ୟୋତ୍ସ୍ନାପରି ପ୍ରେମ ବା
ପଦ୍ମପରି ମନ ଆଉ ଏକନିଷ୍ଠ ନୁହେଁ
ନୂଆ ନୂଆ ପ୍ରଜାପତି ପ୍ରତିଦିନ
ରଙ୍ଗ ବେରଙ୍ଗ ଫୁଲର ପ୍ରଣୟ
ବାର ମାସକୁ ତେର ପ୍ରକାର ହୃଦୟ ।

ସଜନୀ, ଏବେ କଠିଣ ନୁହେଁ ପ୍ରୀତି ପାଳିବା
ପ୍ରତିଗଳିରେ ଫଗୁଣ
ପ୍ରତି ଦର୍ପଣରେ ଭିନ୍ନ ଭିନ୍ନ ପ୍ରତିବିମ୍ବ
ପ୍ରତି ବଗିଚା କସ୍ତୁରୀ ମୃଗର ବନ
ଚିରବର୍ତ୍ତମାନ ଅପେରା ଫଗୁଣ ।



## ଧୂଳି ସ୍ନାନ

ଘରଚଟିଆ ଗୁଣ୍ଡୁଚିମାନେ
ଧୂଳିସ୍ନାନରେ ମଗ୍ନ
ଥୁଣ୍ଟାଗଛ ଶୀର୍ଷରେ କାଉର ବସା
ବର୍ଷା ଶକୁନକୁ ନେଇ ଚିନ୍ତିତ
ସନାତନ;

ବର୍ଷା ନିରସ ପ୍ରାଣରେ
ହସଭରେ, କୁଢ଼ କୁଢ଼ ସ୍ୱପ୍ନ ଆଉ
ସ୍ମୃତିର ସୋପାନ
ବିଗତ ପ୍ରେମିକା ପରି ଛଳ ଛଳ
ବ୍ୟଥାତୁର ଜୀବନର
ଶୀତଳ ଚନ୍ଦନ;

ବର୍ଷା ଗଲାଣି
ପୋକଶୋଷା ଧାନଗଛରେ କେଣ୍ଡା ନାହିଁ
ବିଲ ହିଡରେ ହସୁଛି କାଶତଣ୍ଡି
ପ୍ରେମିକାର ଅଭିମାନ ନେଇ

ସନାତନ, ମୁହଁ ପୋଛୁଚି ଗୋଧୂଳିରେ
ବର୍ଷା ନାହିଁ ଶାରଦ ସମ୍ଭାର

ହା ହୁତାଶ ଭାବରେ ଜଳୁଛି ସଂସାର
ଗାଁ ସାରା ସମ୍ପର୍କର ଋତୁ
ସନାତନ ଘାରିହୁଏ ଜୀବନଟା
ଏକାଏକା ଲାଗେ ।

ବଡ ପୁଅ ସୁରଟ ଯାଇଛି କାମ ବାହାନାରେ
ବଡଝିଅ ଗଲା ସନ ଶୋଇଗଲା
ଯୌତୁକ ଜୁଇରେ
ସାନଝିଅ ଅଜାତିଆ ଟୋକା ସଙ୍ଗେ
ଚାଲିଗଲା ଯେ, ଚାହିଁଲାନି
ବାପ ମୁହଁ ଥରେ,
ସାନ ପୁଅ ଘରକୁ ଆସେନା
ଗାଁ ପୂଜା ସେକ୍ରେଟାରୀ ଚାନ୍ଦା ଟଙ୍କାରେ
ମଦପିଇ ଉତ୍ସବମୁଖର
ବୁଢ଼ୀ ଆଣ୍ଠୁଗଣ୍ଠି ବାତରେ ଗଡୁଛି
ସନାତନ ସ୍ୱପ୍ନ ଦେଖେ
ପୂଜାର ସମ୍ଭାର ନେଇ ବିଲବାଡି ହସୁଛି ।

ବୁଢ଼ୀର ଆଖିରେ ସ୍ୱପ୍ନ ନାହିଁ
ଭାଗ୍ୟ ନିନ୍ଦି ପଡିଛି;
ସନାତନ ଖୁସି ହେବାର ଅଭିନୟ କରେ
କାମନାର ଦିଗନ୍ତକୁ ଚାହିଁ,
ଧରିତ୍ରୀର ଫଟା ଓଠେ
ଧୂଳି ବୋଳା ସବୁବୋକ ଦେଇ ।



# ରୂପାନ୍ତର

ମାଟିକୁ ଭୁଲି ସାରିଥାଏ ପକ୍ଷୀ
ଗଛ ଫାଙ୍କର ଚିତ୍ରିତ ନୀଳ ଆକାଶ ଚେନାଏ
ନିର୍ଜନ ତାରକାର ଅଭିସାର ରଚେ
ଗଛ ସହିତ ପରକୀୟାର ସମ୍ମୋହନ
ଅନବରତ ଉଡ଼ାଣ ।

ବସା ଯୋଉଠି ସେଇଠି ସକାଳ
ଶାବକ ଅପେକ୍ଷାରତ
କୋରଡ଼ ଭିତରେ ଅଜଗର
ଜିଭ ଲହଲହ ।

ସମୟର ନୂଆ ଠିକଣା ଧରି
ପକ୍ଷୀ ଉଡ଼ିଯାଏ
ପଛରେ ରହିଯାଏ ଆକାଶର ନୀଳ
ଚିହ୍ନା ଚିହ୍ନା ବଉଦର ଖେଳ ।
ଗଛରେ ଝୁଲୁଥାଏ ଜହ୍ନପରି ଫଳ
ଚଞ୍ଚୁ ଲଗାଏ ମହାକାଳ ।

ମଣିଷ ରୂପାନ୍ତରିତ ହେଉଥାଏ
କ୍ରମଶଃ ଅଜଗରରେ
ହୋଇପାରେନା ପକ୍ଷୀ
ବା ଗଛ ।

ପକ୍ଷୀ ଗଛ ପ୍ରେମରେ ମସ୍‌ଗୁଲ
ଭୁଲୁଥାଏ ସମୟ
ଶାବକ ଝୁରୁଥାଏ କୋରଡ଼ରେ
ମଣିଷ ପାଲଟି ସାରିଥାଏ ଅଜଗର ।



# ଅଙ୍କୁରୋଦ୍ଗମର ମୁହୂର୍ତ୍ତ

ଗଛ ପ୍ରେମରେ କ୍ରମଶଃ ପକ୍ଷୀ
କ୍ରମେ କ୍ରମେ ପାଲଟେ ଛବି
ଅନ୍ଧାର ଯୋଉଠି ଜମାଟ ବାନ୍ଧେ
ସେଇଠି ବସା ତିଆରେ ।

ସମୟ ଉଗ୍ରପନ୍ଥୀ ପରି
ଅନୁପ୍ରବେଶ କରେ ବସାରେ
ଦିହରେ, ଆତ୍ମାରେ
ଆତ୍ମା ଅଛି ବୋଲି
ସମୟ ଅଛି
ସମୟ ଅଛି ବୋଲି
ପକ୍ଷୀ ଡେଣା ମେଲିଛି ।

ବୋଧେ ସବୁ ଦର୍ଶନରେ
ପକ୍ଷୀଟିଏ ଥାଏ
ବସା ନିର୍ମାଣିବା ପାଇଁ
ସମୟ ବିଦାରି ନିଏ ଶରୀର
ଶରୀର ଯେତେ କ୍ଷୟ ହୁଏ
ସେତେ ଉଜ୍ଜ୍ୱଳ ହୁଏ ଆତ୍ମାର ଜ୍ୱଳନ

ଶରୀର  ଆତ୍ମା ନିଃଶେଷ ହେଲେ
ବସା ଯାହା
ସମୟ ବି ତାହା
କେବଳ ଆକାଶ ମୁହାଁ
କ୍ରମଶଃ ଏକ ସୁଦୀର୍ଘ ଉଡ଼ାଣ  ।

ଗଛ ପାଖରେ ଥିଲେ
ଆକାଶକୁ ପରଖିବା ସହଜ ହୁଏ
ମାଟିକୁ ଅନୁଭବି ଜାଣିହୁଏ
ଆତ୍ମାର ଉଷ୍ମ ଆଲିଙ୍ଗନ  ।

ଯେଉଁଠି କେହି ଆତ୍ମୀୟ ନ ଥାନ୍ତି
ନ ଥାଏ ନିର୍ଭର ଭରସା
ଗଛଥାଏ
ନିର୍ଜନ ରାସ୍ତାରେ  ବ୍ରହ୍ମରାକ୍ଷସ
ମୃତ ଗର୍ଭବତୀ କିଶୋରୀ ପିଶାଚୀ
ଯେଉଁଠି ବାଟ ଓଗାଳେ
ଭୟ ଭୟ ଲାଗେ
ସେଇଠି ଜହ୍ନ ଆଲୁଅର ଠିକଣା
ଗଛକୁ ଜଣା  ।

ଅନୁଭବ ଭିତରେ ସବୁଠି
ଗଜୁରିଥାଏ ଅହରହ ଚାରାଟିଏ
ବୀଜକୁ ଫଟାଇ ଜୀବନ- ମନ୍ତ୍ର ଗୁଣ୍ ଗୁଣାଏ

ସମୟ, ଆତ୍ମା, ଆକାଶ, ମାଟି
ଗଛମାନଙ୍କ ଅଦଉତି ଭିତରେ
ବ୍ରହ୍ମଲୀନ ବସାଟିଏ

ଅଙ୍କୁରୋଦ୍ଗମର ମୁହୂର୍ତ୍ତରେ
ନା ବସା
ନା ସମୟ
ଦରକାର ନ ଥାଏ କାହାର ।



## ଚମ୍ପାଗଛ

ପ୍ରତି କାହାଣୀରେ ଗଛଟିଏ ଥାଏ
ଯା’ ମୂଳରେ ନିରାଶ୍ରୟ ମଣିଷ
ଦୁଃଖ ଜଣାଏ, ମନ ଭରି କାନ୍ଦେ ।

ପ୍ରତି କାହାଣୀରେ ଗଛ କୋରଡ ଥାଏ
ଛପିଥାଏ ଅଜଗର
ଜଗିଥାଏ କାଉ ଛାଡିଥିବା ରାଣୀଙ୍କ
ଅମୃତ କଙ୍କଣ ।

ପ୍ରତି କାହାଣୀରେ ଡାଳଟିଏ ଥାଏ
କବିଟିଏ ବସି ମୂଳକୁ ଚୋଟ ପକାଏ ।

ପ୍ରତି କାହାଣୀ ଆରମ୍ଭ ହୁଏ ଗଛରୁ
ସରେ ଗଛଠି
ଧର୍ମକାକ ବସିଥାଏ ସବା ଅଗ ଡାଳରେ
ମୂଳର ମାଟି ଖୋଳୁଥାନ୍ତି ଆଠଓଳା ।

ଗଛ ସେମିତି ଥାଏ
କେତେବେଳେ ଅଜଗର ତ
କେତେବେଳେ କପୋତ ହାତରେ

ବାର୍ତ୍ତା ପଠାଏ ପବନ ।
ରାଣୀ ପଡିଯାଇଥାନ୍ତି ଗଛର ପ୍ରେମରେ
ଅବୁଝା ରଜା ଆଦେଶ ଦିଅନ୍ତି
ରାତାରାତି ସବୁଗଛ କାଟି ଦିଆଯାଉ
ସବୁକବି ଶୂଳିରେ ଚଢ଼ନ୍ତୁ ।

ମନ୍ତ୍ରୀ ପଚାରନ୍ତି ଗଛ କାହିଁ
କବି କିଏ
ଆଠ ଓଲା ହସନ୍ତି ହୋ ହୋ ।
ଯିଏ ଡାଳରେ ବସି ମୂଳକୁ କାଟେ
ସେ କବି ।
ଯିଏ ସବୁବେଳେ କଟୁଥାଏ
ସେ ଗଛ ।

କବିର ହୃଦୟ ଚିରି
ଚାରାଟିଏ ପତ୍ର ମେଲେ
ପାରିଷଦ କୁହନ୍ତି, ହେଇ
ଜେମା ଆସିଗଲେ, ଚମ୍ପାଗଛ ରୂପରେ ।



# ଏମିତି କିଛି ଆରମ୍ଭ

କିଛି ଗୋଟାଏ ଛାଡିଆସିଛି ଜଙ୍ଗଲରେ
ବିଭୋର ପକ୍ଷୀର କାକଳି
ହାରଜିତ୍‌ର ସଂଘର୍ଷରେ ମୋର ସ୍ମୃତି
ଅହଂକାର-ବାଲିବନ୍ଧର ବିପର୍ଯ୍ୟସ୍ତତା ।

ଏବେ ସାରା ଅରଣ୍ୟ ଅପରିଚିତ
ମାଟିସାରା ଝରାପତ୍ର ଓ ବଣଫୁଲ
କ୍ଲାନ୍ତ ମୁଁ ଓ ସମୟ ।

ଆଶ୍ୱସ୍ତ ମୁଁ ପଥହରା ଜଙ୍ଗଲରେ
ପଥ ପଚାରୁଛି ନିର୍ବିକଳ୍ପ ଗଛକୁ;
ଏମିତି ସତ୍ୟର ସାମ୍ନାହୁଏ ଅରଣ୍ୟରେ
ହଜିଯାଏ ଅନେକ କିଛି ସହରରେ,
କିନ୍ତୁ ଖୋଜାଯାଏ ଅନ୍ଧାରୀ ପ୍ରପାତରେ
ପାହାଡୀ ଖୋଲରେ
କ'ଣ ବା ହବେ ନିଃସ୍ୱ ଜୀବନର
ଲୁହ, ରକ୍ତ, ସ୍ୱେଦ, ରେତ ନା
ବିବାକ ସୌନ୍ଦର୍ଯ୍ୟ !
ସେମିତି ଥାଏ ପ୍ରେମ, ସ୍ମୃତି ଓ ଅତୀତ

ସେମିତି ଥାଏ ଥୁଣ୍ଟା ଗଛ ଓ ଅରଣ୍ୟର
ସାବ୍‌ଜା ବେହରଣ ।

ଏମିତି କିଛି ଆରମ୍ଭ ହୁଏ
ଅରଣ୍ୟ ଭିତରୁ
ପରିଚିତ ପାଦଚଲା ରାସ୍ତା
ଢଙ୍କା ସରିଥାଏ
ଝରାପତ୍ରରେ ;
ବାଘର ପାଦଚିହ୍ନ, ଅଜଗରର ନିଦ
ବା ଶାଗୁଣାର ଚାହାଣି ପରିଚିତ ଲାଗେ
ନିର୍ଜନ ହୃଦୟରେ ରହି ରହି ଶୁଭିଯାଏ
କୋଇଲିର କୁହୁ

କେହି ଜଣେ ପ୍ରତି ମୁହୂର୍ତ୍ତରେ ବାଟ ହୁଡୁଥାଏ
ଜଙ୍ଗଲରେ;
କେହି ଜଣେ ପ୍ରତି ମୁହୂର୍ତ୍ତର ସ୍ମୃତିରୁ
ଉଭାନ୍ ହେଉଥାଏ ।

କାନ୍ଦ ଭିତରେ ବାନ୍ଧି ହେଉଥାଏ ଅପୂର୍ବ
ଗୀତର କୋରସ
ଏମିତି ଆରମ୍ଭ ହେଉଥାଏ କିଛି,
ମୋ' ଭିତରେ ଅରଣ୍ୟରେ ଗଢ଼ା ହେଉଥାଏ
ଅଭେଦ୍ୟ ଦୁର୍ଗ, ନୂଆ ଠିକଣା
ଭିତରେ ଭିତରେ ସଂଚରି ଯାଉଥାଏ

କିଛି ଅଦ୍ଭୁତ ଶବ୍ଦ ଓ
ରାଗିଣୀ
ପରିଚିତ ସମ୍ପର୍କ ସବୁ ଅପରିଚିତ
ପାଲଟୁଥାନ୍ତି
ଏମିତି ଆରମ୍ଭ ହେଉଥାଏ
କିଛି ଅଭିନବ କାହାଣୀ ।



# ପୁରୁଣା ଦୁଃଖ

ଦୁଃଖ ପୁରୁଣା ହେଲେ ଘା' ହୁଏ
ସ୍ମୃତି ମଧୁର ବକଳ ପରି ଭିଡେ
ଆତ୍ମାକୁ
ଗଛ ଦୂରେଇ ପାରେନା
ପିନ୍ଧୁଥାଏ ଦୁଃଖର ବେହରଣ
ଦୁଃଖ ନ ଥିଲେ ଜୀବନ କ'ଣ ?

ଗୁରେଇ ହରାଇଥିଲା ପୁଅ ସ୍ୱାମୀ
ମାଓବାଦୀ ଓଟାରିନେଲେ
ଷୋହଳ ବୟସ କଅଁଳା ଝିଅ
ଜଙ୍ଗଲ ଜଙ୍ଗଲ ଖୋଜି
ଦିଅଁ ମନାସି
ରମ୍ଭାଦେବୀଙ୍କୁ ମୁଣ୍ଡିଆ ମାରି
ଥକିପଡିଲା ଗୁରେଇ ।
କଏରୁ କହିଲା, ମୋତେ
ଦ୍ୱିତୀୟ ହ'
ରାଣୀ ହେବୁ ଦୁଃଖ ଯିବ ।

ଠିକାଦାର କହିଲା, ବାସନ ମାଜ
ରୋଷେଇ କର, ପିଚୁ ଢ଼ାଳ ରାସ୍ତାରେ

ତହତନ୍ଦ ତାତିରେ ହୁଗୁଳା କର
ଯଉବନ
ନୂଆ ନୂଆ ରଙ୍ଗରେ ପଶିଆସୁ
ଫଗୁଣ ।

ଗୁରେଇ ଦୁଃଖକୁ ଚନ୍ଦନ କଲା
ଦୂର ପାହାଡ଼ର ସ୍ୱପ୍ନ ଦେଖା ଛାଡି
ଧୂ ଧୂ ବାଲିରେ ଚାଲିଲା
ସଉତୁଣି ଗର୍ଜିଲା, ରାଣ୍ଡ ଘଇତାଖାଇ
ମୋ ସଂପତ୍ତିରେ ଭାଗ
ତୋ ରକ୍ତ ପି' ଯିବି ।

ଗୁରେଇ ସବୁ ସହିଲା
ଜଙ୍ଗଲରେ ବାଘ ଦାଉରୁ ବଞ୍ଚିଥିଲା
ହେଲେ ଠିକାଦାର ପଞ୍ଝାରୁ
ମୁକୁଳି ପାରିଲାନି
ଦିନରେ ଠିକାଦାର
ରାତିରେ କଏଗୁ ଝୁଣିଲେ ।

ପୁଲିସ୍ ହେପାଜତରେ ମାଓବାଦୀ କମ୍ରେଡ଼
ପୁଅଟିଏ ଜନ୍ମକଲା
ଫଟୋ ଦେଖି ଗୁରେଇ ଲୁହ ଢ଼ାଳିଲା
ଧପାଳିଲା ଡାକ୍ତରଖାନାକୁ ।

କଅଁଳ ଛୁଆକୁ ଦେଖିଲା
ପୁଣି କମ୍ରେଡକୁ ଝିଅଲୋ କହି
ରାହା ଧରିଲା
ଝିଅ ତା ସାମ୍ନାରେ ବୁଢ଼ି ବୁଢ଼ି ଲାଗୁଥିଲା
ଗୁରେଇ କହିଲା, ମୋତେ ନେଇଯା
ତୋ ସାଥିରେ
କମ୍ରେଡ କଅଁଳା ଛୁଆକୁ ଟେକିଦେଇ
କହିଲା,
ତୁ ଦୁଃଖକୁ ସହିଛୁ ବୋଲି ମା'
ମୁଁ ଦୁଃଖ ସହିପାରୁନି ବୋଲି
ମାଓବାଦୀ
ତୁ ପ୍ରତିବାଦ କରି ପାରୁନୁ
ମୁଁ ପ୍ରତିଶୋଧ ନିଆଁରେ ଜଳୁଛି,
ମା', ନେ ମୋ କଳା ଆକାଶର
ସୂର୍ଯ୍ୟ;
ଗୁରେଇ ପୂର୍ବାଶାକୁ ଦେଖିଲା
ଛୁଆକୁ କୋଳକୁ ନେଲା
ଦୁଃଖ କାଟି ଛାଡ଼ିବ ଭାବି
ପୁଣି ଦୁଃଖର ସାଞ୍ଜୁ ପିନ୍ଧିଲା ।

ଗଛର ବକଳ ପରି ଦୁଃଖ
ପୁରୁଣା ହେଉଥିଲା
ଗାଢ଼ ହେଉଥିଲା ।



# ଅଭିସାର

ସେ ପ୍ରସ୍ତୁତ ଥିଲା
ଏକ ଅସରନ୍ତି ଅଭିସାର ପାଇଁ
ଯାହାର ଯେତେବେଳେ ମନ
ସମୁଦ୍ର ହେଉ ଜଙ୍ଗଲ ହେଉ
ସେ ପ୍ରବେଶୁଥିଲା ଅଗ୍ନିରେ
ଯାବତୀୟ ଅବଶୋଷ ଗ୍ଲାନି
ଛାଡ଼ି ଦେଉଥିଲେ ତା' କୋଳରେ
ତାର ଉଲଗ୍ନ ନିର୍ଜନତାକୁ ଶୋଷି
ଲେଖୁଥିଲେ କବିତା ।

ସମସ୍ତେ ଜାଣୁଥିଲେ
ସେ ଆଗଉଛି ଜୀବନ ଆଡକୁ
ସାବ୍ୟସ୍ତ କରିବାକୁ ଉଲଙ୍ଗ ଅଧିକାର
ମାଟି ତଳେ ପାଦେ ପାଦେ ଧସି ଯାଉଥିବା
ପାଦକୁ ଉଠାଇ
ସେ ପ୍ରସ୍ତୁତ ଥିଲା ଅନ୍ୟ ଏକ
ଅଭିସାର ପାଇଁ ।



## ନିଭୃତ ନୀଡ଼

ସଂଧ୍ୟାତାରା ଦିଶିଲାଣି
ଗୋଧୂଳି ଅତୀତ
ଗାଁ ପାଖ ଡୁଙ୍ଗୁରିରେ
ଜହ୍ନ ମହୋତ୍ସବ ।

ପକ୍ଷୀ ଚାଉଁ ଚାଉଁ
ଫେରିଲାନି ନିଭୃତ ନୀଡକୁ
ଛଳଛଳ ଛଳକା ଆଖିରେ
ଶାବକ କ୍ଷୁଧାରେ

ସହର ସାରା
ପଥ ଓ ପଥିକ
ଆକାଶରେ ପକ୍ଷୀ ଓ ଶାବକ
ଚିହ୍ନା ଚିହ୍ନା ପୁଣି ଅପରିଚିତ
ହସି ହସି ବାଟ ଭାଙ୍ଗି ଚାଲିଗଲେ
ଯେ ଯାହାର ଅଚିହ୍ନା ଦିଗନ୍ତ ।

ଜୀବନତ ଚାଲିଛି
ମୃତ୍ୟୁ ବି

ସୁଖ ତ ଚାଲିଛି
ଦୁଃଖ ବି
ଯେ ଯାହାର ନିର୍ଜନତା ଧରି
ଯେ ଯାହାର ଅନୁଭବ ଧରି
ଚାଲିବା
ରାସ୍ତା ହେବା
ବାଟୋଇର ଭାଗ୍ୟତ
ଚିରଦିନ ଚାଲୁଥିବା

ଏବେ ପକ୍ଷୀ ଉଡିଗଲାଣି
ଗଛ ଛାଡି, ଶାବକ ଛାଡି
ଦିଗନ୍ତ ସେପାରେ
ଦୁଇଟି ନିର୍ଜନ ନକ୍ଷତ୍ର
ନୀଳ ଆକାଶରେ ।

ଆମେ ଯେ ଯାହାର ଦୁଃଖ ଧରି
ସମୟକୁ ନିନ୍ଦୁଛେ
ପିଞ୍ଜରା ଭିତରେ ପକ୍ଷୀ ଛଟପଟ
ଆସ
ପକ୍ଷୀଟିକୁ ଛାଡିଦେବା
ଦେଖିବ
ସବୁ ନିଜର ନିଜର
ଲାଗିବ ।
ନିଭୃତ ନୀଡରେ କିନ୍ତୁ ପକ୍ଷୀ ନ ଥିବ ।

❖❖❖

## ଯେଉଁଠି ଥାପିଲି ପାଦ

ସେଇଠି ଗଛଟିଏ ଥିଲା
ଶୀତ କାକର ଖରାର ଅଦଉତି ସହି
ମେଘର ମଶାଲ ଧରି ;
ମାଟି ସମତୁଲ କରି ଡୋଜର ଗଢୁଥିଲା
ନୂଆ ଦୁନିଆ,
ସେଇଠି ଗଛଟିଏ ଥିଲା ।

ଗଛର ଛତା ତଳେ ଖରାକୁ
ବେଖାତିର କରି କାଠହଣା
ଦୁଇଟି ବିଲୁଆ
ଡେଣା ମେଲାଇ ବସିଥିଲା ଶାଗୁଣା ।

ଶିଳ୍ପ ହେବ କାର୍ଖାନା ବସିବ
ବାଦଲ ଖବର ଦେଇ ସାରିଥିଲା
ସହର ଗଢ଼ିବ
ଉଷୁମ ହୋଇ ଉଠିଥିଲା ପବନ
ମାଟି ସଜିଲ କରିଥିଲା କଳା ପତାକା
କ୍ଷତିପୂରଣ ଦାବି କରୁଥିବା ପତଙ୍ଗମାନେ
ଯେ ଯାହାର ନିଆଁଧରି ଚଂପଟ
ସମୁଦ୍ର, ଖୋଜୁଥିଲା ନଈ ପାଣିର ପରିଚୟ ।

ଗଛର ମନଫୁଲାଣିଆ ଗୀତ ଶୁଣିବାକୁ
କୋଇଲି ଧରିଥିଲା ରାହା
ସୁଲୁସୁଲିଆ ବାଆରେ ହଜିଯାଇଥିଲା ସମୟ
ଯେଉଁଠି ଥାପିଲି ପାଦ
ସିଏତ ପାଦପ
ମାଟିର ମୌନ ପ୍ରତିବାଦ ।

ମୁଁ ପାଦ ଥାପି ସାରିଥିଲି
ଜାହିର କରିଥିଲି ନିଜର ଅଧିକାର
ଡୋଙ୍ଗର ଫେରିଯାଇଥିଲା ମାଟି ଖୋଳା ଛାଡି
ପକ୍ଷୀ ଡେଉଁଥିଲା ଡାଳରୁ ଡାଳ
ଶାଗୁଣା ଉଡିଯାଇଥିଲା
ସାରା ପବନ ବିଞ୍ଚି ଦେଇଥିଲା ଖବର
ଉଦ୍‌ବାସ୍ତୁ ଲୋକେ ଯୋଗାଡ କରି ସାରିଥିଲେ
ଘର
ଧୂଆଁ ପଟଳର ମେଘ ଚିରି
ଶେଷ ତାରାଟି ଆଖି ମିଟିକା ମାରୁଥିଲା
ବିଦ୍ରୋହର ଶେଷ ଶିଖାଟି ଗୀତ ପାଲଟିଥିଲା ।
ଗଛ ପ୍ରତ୍ୟାଖ୍ୟାନ କରିସାରିଥିଲା ସମସ୍ତ ସୁଖ
ସମସ୍ତ ସମୃଦ୍ଧି,

ଯେଉଁଠି ଥାପିଲି ପାଦ
ସେଇଠି ଗଛଟିଏ ଥିଲା
ମାଟିର ବାହୁନା ଶୁଭୁଥିଲା ।



## ଝରାଫୁଲ

ତମ କୋଳର ଫୁଲ ମୁଁ
ପବନର ଖେଳନା
ମାଟିର ମମତାରେ ଆକାଶକୁ
ଉହୁଁକି ପଡିଛି ତଳେ ।

ସ୍ମୃତି କହିଲେ ବାରଂବାର ଫେରିବା
ମାଟିକୁ
ସ୍ୱପ୍ନ କହିଲେ ଲୁହର ମୂଳରେ ବିକିବା
ଆକାଶକୁ ;
ବୃତ୍ତାକାରରେ ବୁଲିବା ଅବଧାରିତ
ନିଜ ଅପାରଗତାକୁ ଅନ୍ୟର
ଦୋଷ ବୋଲି କହିବା
ଆତ୍ମ ପ୍ରତିଷ୍ଠାର ପାହାଚ ।

ନଈକୂଳରେ ସବୁବେଳେ ନଥାଏ
ପବନ
ଜଙ୍ଗଲ ସାରା ସବୁବେଳେ ବିଞ୍ଚିହୁଏନା
ଫୁଲ
ମୁଁ ଗଛରୁ ଉଜୁଡି

ମାଟିକୁ ଚୁମେ
ତମ କୋଳ ପରି ନରମ
ସ୍ୱପ୍ନରେ ।
ପତ୍ର ଗହଳିରେ ନିଜକୁ
ଚିରକାଳ ଖୋଜୁଥାଏ
ଝରା ଫୁଲଟିଏ ।

ତମ ସ୍ମୃତିର ଗଛରେ
ସ୍ୱପ୍ନର ଫୁଲ ଧରିବାକୁ
ମୁଁ ମାଟିରେ ଲୋଟିଛି ।



## ଦୟାନଦୀ

ସବୁ ଜାଗାରେ ଥାଏ
ଦୟାନଦୀ ସରସ୍ୱତୀ ବି
ଲୁପ୍ତ କ୍ଷୀଣଧାରା କିନ୍ତୁ ଐତିହ୍ୟମୟ ।

ଅତୀତ ଏମିତି
ଦୟାନଦୀ ତୀରରେ ବା ଗଙ୍ଗା କୂଳରେ
ଓଡ଼ିଆମାନଙ୍କ ମର୍ଯ୍ୟାଦା ତିଳ ତିଳ
ଝରିଯାଏ ପାଣି ହୋଇ
ସମୟ ବହିଯାଉଥାଏ ଅଶାନ୍ତ ସୁଅ ପରି ।

ଭୋକକୁ ଜୟ କରିବା ଶିଖିନି ଦୟାନଦୀ
ମାଣିକ ଓ କାରୁବାକୀମାନେ
ସୌନ୍ଦର୍ଯ୍ୟର ଦେବୀ ପରି
ପାଲଟି ଯାଆନ୍ତି ଇତିହାସର ଦୀପ୍ତି;

ଟୋପାଏ ରକ୍ତ ବା ଧାର ଧାର
ରକ୍ତ ମେଣ୍ଟାଇ ପାରେନା ଭୋକ
ଅଜଗର ପରି ଗଡୁଥାଏ ଅତୀତ
ତାର ଆତ୍ମୀୟ ନ ଥିଲା ଗଛ କି ପାହାଡ଼
ଆଦିମ କାଳରୁ ସେ ମନ୍ଥି ଚାଲିଛି ଅରଣ୍ୟ ।

ଖୋଜିବାର ନିଶା
କେବେ ଥମେନା
ମାଟିତଳ, ଗୁମ୍ଫାଭିତର
କଣ୍ଢା ଝଣ୍ଢା ତଳେ ଠାବ ହୁଏ ଇତିହାସ
ଶବ ପୋଡିଗଲାପରେ ପାଉଁଶ
ପାଲଟେ କବିତା
ପଥର ସନ୍ଧିରେ ଥିବା ଜୀବାଶ୍ମ
ବରଫ ଭିତରେ ଜମାଟ ବାନ୍ଧା
ବିନ୍ଦୁଏ ରକ୍ତ
ଗଢ଼ିଦିଏ ନୂଆ ଏକ ସଭ୍ୟତା ।

କାରୁବାକୀର ଗର୍ଭାଶୟରେ
ସାଇତା ହୋଇ ରହିଥାଏ ଇତିହାସର
ଭ୍ରୂଣ, ସଞ୍ଚରୁଥାଏ ପଲ୍ଲବୁଥାଏ
ସମୟ
ଖୋଜୁଥାଏ ନୂଆ ପରିଚୟ ।

ସବୁଜାଗାରେ
ଦୟାନଦୀ ଥାଏ ସରସ୍ୱତି ବି
କିନ୍ତୁ ଖୋଳିବାକୁ ପଡେ ମାଟି ଓ ଠିକଣା
ଅବାଞ୍ଛିତ ଭ୍ରୂଣ ହତ୍ୟା ପରି
ଚାଲିଥାଏ ଅତୀତ ମାଜଣା ।



# ଭୂମିକା

ମୋ ଭିତରେ ଦୁଃଖ ହିଁ
କବିତାର ରୂପ ନିଏ
କେତେବେଳେ ନଈ
କେତେବେଳେ ରାଇ ପାଲଟେ
ପହଁରାଇନିଏ ଜଙ୍ଗଲ ଚଟାଣ
ପକ୍ଷୀମାନଙ୍କ ସ୍ୱର
ଗଛର ଶ୍ରୋତାପଣ ॥

କବିତାରେ ବଞ୍ଚିବା ସହଜ ନୁହେଁ
କେଉଁକାଳେ, ଅବଶ୍ୟ ମରିହୁଏ
ସର୍ବଶ୍ରେଷ୍ଠ ଦୁଃଖକୁ ସାଉଁଟି
ସୌଭାଗ୍ୟର ଚୌକାଠରୁ ସୁଖର କବର
ଅନ୍ଧାରୁଆ ଜୀବନର ଅମଡାକୁ ଡେଇଁ
କବିତାରେ ସଦା ମୂର୍ତ୍ତିମାନ
ରିକ୍ତ ଭୀମଭୋଇ ॥

ଜୀବନ ସହ ଚାଲିଥାଏ କବିତା
କବିତା ସହ ରକ୍ତାକ୍ତ ଦୁଃଖର ଛାଇ
ଲୁହର ଲହଡିରେ ପ୍ରାଣାନ୍ତକ ସନ୍ତରଣ ପରେ
ପୁତ୍ର ଶବ ଚଢ଼ି ପାରିହୁଏ ସମୟର ନଈ ।

କବିତା ଜୀବନ ନୁହେଁ ଦୁଃଖ ନୁହେଁ
ଜୀବନ ମନସ୍କ ଦୁଃଖର ପ୍ରହେଳିକା
ଦୁଃଖସିକ୍ତ ଜୀବନର
ଅନନ୍ୟ ଭୂମିକା ।



# ମହନୀ କରିଛି ମୋତେ

ମହନୀ କରିଛି ମୋତେ, ଅନେକ ବର୍ଷ
ଧରି । ଜାଣେନା ସେ ମନେ ରଖିଛି କି ନାହିଁ
ମୁଁ କିନ୍ତୁ ଝୁରି ହେଉଛି;

ମୋ ସ୍ମୃତିକୁ ଛୁଇଁ
ଚେତନାକୁ ଛୁଇଁ
ସେ ବୃତ୍ତାକାରରେ ବୁଲୁଥିଲା
ମିଛ ସତ, ସତ ମିଛ କିଛି ସ୍ପଷ୍ଟ
ନଥିଲା, ସବୁ କୁହୁକ ମାୟା ;

ଦୂର ବୀଣାର ଅନୁରଣନ ପରି
ଅନୁଭବୁଥିଲି ଉଚ୍ଚାଟ ସୁର ଯାହା
ସରି ସରୁ ନଥିଲା
ଆତ୍ମଲୀନ କରୁଥିଲା ମୋତେ
ମୋ ଆୟୁଷକୁ
ମୋ କାଳ ପରକାଳକୁ ।
କଳ୍ପନା ଭିତରେ ଗଢୁଥିଲା ଡେଣା
ଡେଣାକୁ ବେଗବାନ୍ କରୁଥିଲା
ତୋଫାନ

ହଠାତ୍ କେମିତି ଚମକି ପଡୁଥିଲା ବିଜୁଳି
ଚମକାଇ ଦେଉଥିଲା ସ୍ମୃତି ଓ ସ୍ୱପ୍ନକୁ
ନିଛାଟିଆ ଉଦୁଉଦିଆ ଦ୍ୱିପ୍ରହରେ
ଛାଇପରି ସେ ଲାଗିଥିଲା
କାଳିଶୀ ଯେମିତି
ମହନୀ କରିଥିଲା ମୋତେ
ମୋର ସମସ୍ତ ସୁକୃତକୁ
ସମସ୍ତ ପୂର୍ବପୁରୁଷଙ୍କୁ ।

ସେ ଓସ୍ତାଦ ଉଲୁକ ବିଦ୍ୟାରେ
ଏପାରିର ଗଛ ରାତି ଭିତରେ ସେ ପାରିରେ
ଭୟଙ୍କର ଚଂପ ସାପକୁ ବାଟ କଢ଼ାଏ ଏଣ୍ଡୁଅ
ଗୋଟିଏ ଲୁହାକଣ୍ଟାରେ କିଳାହୁଏ
ବ୍ରହ୍ମରାକ୍ଷସ ।
ବହୁତ ଦିନ ଲାଗିଥିଲା ଜାଣିବାକୁ
ତାର ବିଦ୍ୟା ତାର କରାମତି
ମୋର ଚେତା ଫେରିଲା ବେଳକୁ
ମୁଁ ମେଣ୍ଢା ତାର ଶୟନ କକ୍ଷରେ
ମେଁ ମେଁ ରାବ ଭିତରେ
ଅସରନ୍ତି ବୀଣାର ସ୍ୱର
ପଲଙ୍କ ଉପରେ ଅର୍ଦ୍ଧଶାୟିତା
ନିମଗ୍ନ ଆଖିପତାରେ ଝଡ ଓ ଭୂକଂପ
ଯୋଗୀରୁ ଭୋଗୀ ବନ୍ଦୀ
ଗୋଟିଏ ଚାହାଣୀରେ

ମୁଁ ରାବୁଥିଲି ମୁକ୍ତି ଆଶାରେ
ମେଁ ମେଁ .... ମେଁ... ମେଁ ...
ସେ କହୁଥିଲା ବାଃ ବାଃ
ଚମତ୍କାର ଶବ୍ଦ ଯାଦୁକରୀ ।

ସେ ମହନୀ କରିଥିଲା ମୋତେ
ବହୁ ବର୍ଷ ତଳେ
ଜାଣେନା ସେ ମନେ ରଖୁଛି କି ନାହିଁ
ମୁଁ କିନ୍ତୁ ଝୁରି ହେଉଛି ।

❖❖❖

# ଦକ୍ଷିଣାବର୍ତ୍ତ

ଦକ୍ଷିଣକୁ ଚାହିଁଲେ
କଣ ଦିଶେ ?
ଚୁଡଙ୍ଗଗଡର ଭଗ୍ନସ୍ତୂପ
ଦେଉଳିଆପାଟଣା ପାହାଡ ଶିଖର
ଡେରାସର ଅମାପ ଜଳ
ଚନ୍ଦକା ଜଙ୍ଗଲ ?
କଣ ?

ହାତୁଣୀ କାନ୍ଦେ, ଝୁରେ
ରାତି ଗଭୀର ହେଲେ
ଦକ୍ଷିଣକୁ ଚାହେଁ
କା'ର ବିରହରେ ଲୁହ ଦି'ଧାର
ଝରିପଡେ ?

ସେ ଜାଣେନା କେବେ ମଣିଷ ଗଢ଼ିଲା ଅଭୟାରଣ୍ୟ
ଚାରିଆଡେ ଖାଇ
ପଥରରର ବାଡ
ଗଡିଯାଉଥିବା ଜଳ ସୁଅକୁ ଅପୂର୍ବ ଗୁନ୍ଧାଣ ?

ସହର ବଦଳୁଥାଏ
ଗ୍ରାସୁଥାଏ ଜଙ୍ଗଲକୁ
ଅରଣ୍ୟର ଗୀତରେ ମସ୍ତଥାଏ
ମାଳତୀ ।

ଆକାଶରେ ଜହ୍ନ ଉଠିଲେ
କୁଅସରାରୁ ମାଳିମୁହଁ ଦେଇ
ବଡ ପାହାଡକୁ ଯାଏ
କୁଆଁତାରା ଦେଖାଦେଲେ ଫେରେ
ଅରଣ୍ୟର ଯାତନାଠୁ
ମଣିଷର କୃତ୍ରିମତା ବେଶି
କଷ୍ଟ ଦିଏ ।

ଦିନେ ଅଞ୍ଚଳର ଲୋକେ
ବାଜା ନିଶାଣ ବାଣ ବନ୍ଧୁକ ଧରି
ହୁରୁଡାଇ ଦେଲେ
ଯେମିତି ଶତ୍ରୁ ସୈନ୍ୟ ଚୋଳ ସାମ୍ରାଜ୍ୟ
ଭିତରେ ।

ମାଳତୀର ବାରଣ ସତ୍ତ୍ୱେ
କିଛି ସାଥୀ ଆଠଗଡଦେଇ
ସାତକୋଶିଆକୁ ଚାଲିଗଲେ
ମହାନଦୀର ନୀଳଘୁମ ପାଣି
ଛମ ଛମ ଜଙ୍ଗଲ ସଂଗୀତ

କି କିମିଆ କଲା କେଜାଣି
ଆଉ ଫେରିଲେନି ।

ମାଳତୀ, ଚନ୍ଦକାର ବୟୋଜ୍ୟେଷ୍ଠା
ହାତୁଣୀ
ଏବେବି ଭାଙ୍ଗିଯାଇଥିବା ଦଳକୁ ସଜାଡେ
ସ୍ୱପ୍ନ ଦେଖେ
କେବେ ଫେରିବେ ଜ୍ଞାତି ସହୋଦର
ଆକାଶକୁ ପଚାରେ
ବାଉଁଶ ବୁଦାରେ ପବନ ବଇଁଶୀ ବାଇଲେ
ଉଚ୍ଛନ୍ନ ହୁଏ
ରାତିସାରା ଦକ୍ଷିଣକୁ ଚାହିଁ ରହିଥାଏ ।

ମାଳତୀ ଥ' ହୋଇ
ଜୀବନର ଅପରାହ୍ନରେ
ଜହ୍ନକୁ ରାଣଦିଏ
ବିରହରେ ଝୁରେ
ନିଷ୍ପ୍ରଭ ଆଖି କୋଣରୁ ଦୁଇଧାର
ଝରିଯାଉଥାଏ ।

ଦକ୍ଷିଣକୁ ଚାହିଁ ରହିଥାଏ ।



## ଶୂନ୍ୟ ସଂଗୀତ

ପରସ୍ତ ପରସ୍ତ ଓହ୍ଲାଇ ଦେଲି
ବକଳ ତାଳପତ୍ର
ମଣ୍ଡଥରା ବତାସ
ଶୂନ୍ୟ ଓହଳା ଚେର
ଆସ ଛୁଇଁଦିଅ ନିରିମାଖି
ଆମ୍ଭାକୁ
ଫଗୁଣ ଫୁଲକ ପରି
ମରୀଚିକା ମୁହଁ
କୁହୁଡି ପଖଳା ଦିହ ।

ଯା'ର ପ୍ରତୀକ୍ଷାରେ ଥିଲ
ଉଚ୍ଛୁଳା ଥନ
ପ୍ରପାତ ପରି ବିରହ
ଢୁଆରର ଜହ୍ନ
ଜାନୁ ଓ ଯୋନିର ଇନ୍ଦ୍ରଜାଲ
ନିର୍ମୋହ ଆଲିଙ୍ଗନ
ସବୁ ମୁଠାଏ ସ୍ମୃତି
କଣିଚାଏ ନିଆଁ
ସବୁ ବର୍ତ୍ତମାନ ଓ ଭବିଷ୍ୟତକୁ
ପୋଡିଦେବାକୁ ତିଆର ।

ମୋର ରୁଗୁରୁଗୁ
ଲୋଡିବା ପଣରେ
ଥରେ ଆସ
ଧୋଇଦିଅ ଆଖିର ଲୁହରେ
ମାର୍ବଲ ଦିହ
ଦୂର ଆକାଶର ପକ୍ଷୀପରି
ଛୁଇଁଦିଅ
ମାଟିର ମହକ
ଘୁମ ଘୁମ ପାରାର ଘୁମୁରା
କ୍ୱିକ୍ କ୍ୱିକ୍ ମୟୂରୀ କୁହାଟ ।

ମେଘ ଛୁଆଁ ଗଛପରି
ନଇଁ ଆସେ
ଡମରି ନିଟୋଳ ସ୍ତନ
ଦିହ ଦାହ ସଂବରଣ କରି
ପରସ୍ତ ପରସ୍ତ ଖୋଲିଯାଏ
ଅନ୍ଧାରି ସମୟ
ମାୟାର ପଣତ
ସୋରି ସୋରି ବିଛିହୁଏ
ସୋଚିକ୍ଷିଆ ଖରା,
ଗାଇ ଗାଇ
ଶୂନ୍ୟର ସଂଗୀତ ।



# ମାୟା ମିରିଗ

ଚେନ୍ନାଇର ସମୁଦ୍ର କୂଳରେ ତୁମକୁ
ଅନ୍ଧାରରେ ଦେଖିଥିଲି
ତମେ କହିଥିଲ ତମ ବେଣୀ
ସମୁଦ୍ରର ନୀଳ ପାଣି
ଫୁଲ ଗଜରା
ଜୁଆର ପରି ଧାରେ ବିଜୁଳି ।

ତମେ ଦେଖାଇଥିଲ
ମାୟା ମିରିଗ ଦେହର କୁହୁଡି
ମୁଲାୟମ ସ୍ୱପ୍ନ
ଜୁଆର ମୁଣ୍ଡ ପିଟୁଥିବା
ମୁଗୁନି ପଥର ।

ତମ ଦେହକୁ ସାଉଁଳି
ମୁଁ ଗାଇ ଚାଲିଥିଲି ଆଦିମ ସଂଗୀତ
ପ୍ରତାରଣାର କୁହୁକ ଲାଗୁଥିଲା
କେତେ ସତ
କେତେ ରସବନ୍ତ ।

ବିବେକର ଢେଉ ତଳେ
ଖେଳୁଥିଲେ
ରୋମାଞ୍ଚର ମାଛ
ଅପରାହ୍ନ ଲେଉଟ ଖରାରେ
ପାରାର କୁହାଟ ।

ତମ ତିଆରି ଇଡିଅପମ
ଲାଗୁଥିଲା ଅମୃତ ଅମୃତ
ମୋ ମନକୁ ସନ୍ତର୍ପଣେ
କରୁଥିଲା ଆଶ୍ଚର୍ଯ୍ୟ ଚକିତ ।

ତୁମେ ଏବେ
ଚେନ୍ନେଇରେ ନା କନ୍ୟାକୁମାରୀରେ
ମୁଁ ଖୋଜୁଛି ସ୍ୱପ୍ନ ପରି
ମାୟାର ମିରିଗ
ରେଣୁ ରେଣୁ ସମୁଦ୍ର ବାଲିରେ
ମୋ ଜୀବନ ସ୍ଥିର ଅପରାହ୍ନ ।



# କବିତା ରଚିବା

ପକ୍ଷୀମାନଙ୍କ କଥାର ଫାଙ୍କକୁ
ଅନେଇ ଥାଏ ଗଛ
ଅଜଗରର ନିଦ ସହ
ଓହ୍ଲେଇ ଆସେ ମେଘର ସାନ୍ତ୍ୱନା
ପତ୍ର ଉହାଡରେ ସ୍ୱପ୍ନ ପରି ତାରାମାନେ
ଖୋଜୁଥାନ୍ତି ହଜିଥିବା ନୀରବତା
ଏମିତି ଏମିତି କବିତାର କଥା ।

ହୃଦୟ ଭିତରୁ ବେଳେ ବେଳେ
ମୁକୁଳି ଆସେ ଜହ୍ନ
ସେଇ ହିଁ ଶୋକର କାରଣ
ଗଛ କୋରଡ଼ରେ ସୁରକ୍ଷିତ ନୁହେଁ
ଶାବକ, ସ୍ୱପ୍ନ
ସେଇ ହିଁ ପ୍ରାର୍ଥନାର ଉଚ୍ଚାରଣ ।

ନାରୀ ପରି ଗଛ ଉଚ୍ଚାଟ ହୁଏ
ପ୍ରେମରେ ନିଝୁମ ରାତିରେ
ପବନର ପ୍ରେମପତ୍ର ପଠାଏ ଦିଗନ୍ତକୁ
ଅଲେଖା ଭାଷାରେ

ଗୋପନ କଥାବାର୍ତ୍ତାରେ
ଝରୁଥାଏ ଇତିହାସର ମହୁ
ସମୟ ବାହୁନୁଥାଏ ଶବ୍ଦକୁ ।

କିଶୋରୀର ସୁଷମା ଭିତରେ
ସ୍ୱପ୍ନର ଭ୍ରୂଣ ସଂଚାର ହୁଏ
ଭବିଷ୍ୟତର ଅବୟବ ଗଢୁଥାଏ ଶିଳ୍ପୀ
ନିବୁଜ କୋଠରୀରେ ଅନବରତ,
ନିହାଣ ସ୍ତବ୍ଧ
ମୁଗୁର ନୀରବ
ଶୋକର ଅନ୍ତହୀନ ଗୁଞ୍ଜରଣ ଭିତରେ
ରୂପପାଏ ତ୍ରାଣକର୍ତ୍ତାର ମୁହଁ
କଳା ମଚ ମଚ ଆଖି ଭିତରେ
ସଂଭାବନାର ସୂର୍ଯ୍ୟୋଦୟ ।

ନୀରବ ଶୋକର ଯନ୍ତ୍ରଣାକୁ
ନିରେଖୁଥାଏ ଗଛ
ଅଜଗରର ନିଦ ସହ
ଓହ୍ଲେଇ ଆସେ ସ୍ୱପ୍ନ ପରି କବିତାର ସୁଅ
ଅନ୍ତହୀନ ପ୍ରାଚୁର୍ଯ୍ୟ ଭିତରେ ଉକୁଟି ଉଠେ
ସ୍ୱପ୍ନର ଭ୍ରୂଣ ।

ମେଘର ସାନ୍ତ୍ୱନା ପରି
ପବନର ସଂଗୀତ ପରି

ତାରକାର ପ୍ରେମ ପରି
ଅନବଦ୍ୟ କବିତାର ମୁହଁ ।

ପକ୍ଷୀମାନଙ୍କ କଥାର ଫାଙ୍କ
ଗଛ ଓ ପବନର ଫୁସ୍‌ଫାସ
ମନ ଦିଆନିଆର ମୁହୂର୍ତ୍ତ
ଅଜଗରର ଅଳସ ଆଖି
ଝରାପତ୍ରର ସ୍ୱପ୍ନ ପରି
କବିତାର ବ୍ୟାପ୍ତି

ଆକାଶରୁ ଓହ୍ଲାଉଥିବା
ମେଘମାଳା
ସମୁଦ୍ରର ଅଯାଚିତ
ତରଙ୍ଗ ମେଖଳା
କବିତାର କଳକଳ ନାଦରେ
ଜୀବନ ଉଚ୍ଛଳା

ଆସ
ସାଉଁଳି ଦେବା ଶବ୍ଦକୁ
ସ୍ୱପ୍ନକୁ
ଆସ
ପୁରୁଣା କ୍ଷତରେ ଲଗାଇଦେବା
ଶାନ୍ତିର ମଲମ

ମୁହୂର୍ତ୍ତର ବାହୁନା ଭିତରେ
ଶୁଭୁଥିବ ସାହାନାଇ
ଏଇ ନାଇଁ ଏଇ ନାଇଁ
କହୁଥିବ ନଈ
ସେ ଭିତରେ ଦୃଶିଯିବ
ନୂଆ ଏକ ଦୃଶ୍ୟ
ପ୍ରାଣ ଚମକାଇ ।

ଆସ
କବିତାର ସୁରରେ
ଜୀବନକୁ ବାନ୍ଧିବା
ସମୟର ସୃଜନାକାଂକ୍ଷାରେ
କବିତା ରଚିବା ।



# ମୁଁର ବହୁବଚନ

ଟି.ଆଇ. ପେରେଡରେ ଧର୍ଷିତା
ଗଛ ଚିହ୍ନଟ କରି ନ ଥିଲା କୌଣସି ଅଭିଯୁକ୍ତଙ୍କୁ
ସ୍ୱପ୍ନ ଦେଖାଳିମାନେ ଏମିତି
ଜୀବନ ବଞ୍ଚିବାକୁ ଭୁଲି ଯାନ୍ତି ସବୁକିଛି ।

ଋତୁ ପର୍ଯ୍ୟନ୍ତ ଅପେକ୍ଷା ନ ରଖି
ବୁଲାକୁକୁର ରମଣବ୍ୟସ୍ତ ମଣିଷ ପରି
ବର୍ଷା ହେଉ ବା ବସନ୍ତ
ଲାଜ ଲାଜ ସମୟ ମୁହଁ ଲୁଚାଇ ଦେଉଥିଲା
ଦିନ ଆଲୁଅର ପେଚା ପରି ।

ବ୍ରାହ୍ମଣୀ ସୁଅକାଟି ପ୍ରଖର ବନ୍ୟାରେ
ବୁଡ଼ିଯାଉଥିବା ଡଙ୍ଗାରୁ
ଦଶଜଣଙ୍କୁ ଉଦ୍ଧାର କରି ବାହାବା ପାଇଥିବା
ସନା, ସେଇ ବ୍ରାହ୍ମଣୀ ସୁଅରେ ସମୟ ହୋଇଗଲା ।

ନିଛାଟିଆ ନଈକୂଳରେ ପବନ ଲେଖୁଥିବା କବିତାକୁ
ପଢ଼ିଲା ବୋଲି ସାବିତ୍ରୀ ଏକ ଘରକିଆ
ବାଲ୍ୟ ବିଧବାର ମୋହର ଧରି

ମେଘ ପାଲଟିଗଲା ସିନା
ବର୍ଷି ପାରିଲାନି ମନମୁତାବକ ।

ଏମିତି ଏମିତି ଅନେକ ଚିତ୍ରପଟ ଧରି ମୋର ଆୟୁଷ ମଣ୍ଡିତ
ନଈପରି ବହି ଚାଲିଛି ଜୀବନ
ଗଛହେଉ ବା କୁକୁର,
ସାବିତ୍ରୀ ହେଉ ବା ସନାତନ
ମୁଁ ହିଁ କେବଳ
ସମସ୍ତ ମୁଁର ବହୁବଚନ ।

ସମୟ କେତେବେଳେ ଜୀବନ ତ
ଜୀବନ କେତେବେଳେ ସମୟ
ସ୍ୱପ୍ନରେ ପହଁରୁଥାଏ ମୁହୂର୍ତ୍ତର ଆୟୁଷ
କେତେବେଳେ ଏ କୂଳ ତ
କେତେବେଳେ ସେକୂଳ ।

ଦୁଇ କୂଳ ଖାଇ
ମୁଁ ହିଁ ବାହୁଡ଼ିଥାଏ ସନ୍ତର୍ପଣରେ
ଆଗନ୍ତୁ ବିନ୍ଦୁକୁ,
ଏକରୁ ବହୁବଚନକୁ ।



# ଫେରିବା ସମୟ

ଅରଣ୍ୟକୁ ଯିବାର ବେଳ ହେଲାଣି
ବହଳ ହେଲାଣି ବୟସ
ଗହଳ ରାତି ପରି ଜହ୍ନ ଲୁଚିଲାଣି
କବିତା ଡାଳର ବସାରେ
ତରାସବୁ ସାଉଁଟି ନେଲେଣି
ଦୁଃଖର ଦିହୁଡି ।

ସବୁବେଳ ଲାଗେ ଯେମିତି
ଅରଣ୍ୟକୁ ଯିବାର ଅଛି
ବେଳ ହେଲାଣି
କିନ୍ତୁ ଅରଣ୍ୟ ଖୋଜୁଛି ତାର
କରୁଣ କୁଣ୍ଡଳିନୀ ।

ମୁଁ ଲୋଳିତ ଚର୍ମ ସ୍ମୃତି ଚିତ୍ର
ସ୍ମୃତି ହଜି ଗଲାଣି ଅନ୍ଧାରରେ
ଅନେକ ବର୍ଷ ହେଲା ଜୀବନ ଖୋଜୁଛି
ଜୀବନ ଭିତରେ ନୀରବ ଥିବା ବଞ୍ଚିବା
ଧୁକୁଧୁକୁ ହେଉଛି କେବେ କେମିତି
ଚାଲିଯିବାକୁ ଧମକଉଛି

ଶୋଭାଯାତ୍ରାର ଶେଷ ଲୋକଟି ପରି
ଅନୁତ୍ତରିତ ପରମ ପ୍ରଶ୍ନଟି ପରି
ପଇଁତରା ମାରୁଥିବା ଫାଲଗୁନର କୁହୁପରି
ଛାତି ଚମକା ଭୋଦୁଅ ପ୍ରେମ ପରି
ପ୍ରତ୍ୟାଖାନ କରେ ଶବ୍ଦଙ୍କ ଉଚ୍ଚାରଣ ।

ହୁଙ୍କା ଭିତରୁ ମୁଣ୍ଡ ଟୁଙ୍ଗାରୁଥିବା ସାପ
ଲୁଚିଯାଉଛି ବିଳ ଭିତରେ
ଅନେକ ବର୍ଷ ତଳେ ମୋ ସ୍ମୃତିକୁ ଛୁଇଁ
ଉଡୁଥିବା କଙ୍କିପରି ଜୀବନ ଉଡୁଛି ।

ବଞ୍ଚିବାର ଆକାଶରେ
ଭିଜା ମରମରେ
ନଈକୂଳର ବ୍ୟଥାରେ
ଗୁମୁରୁଥାଏ ଡଙ୍ଗାଟିଏ
କୂଳ ଏପଟୁ କୁହାଟ ମାରୁଥାଏ
କିଏ, ଲାଗୁଥାଏ ଗାଉଛି
ପୁରାତନ ଚଂପୁରୁ ପଦିଏ
ବା ଗାଳି ଦେଉଥାଏ ଅଦୃଷ୍ଟକୁ
ରାଗିଣୀ ଭାଷାରେ ।

ଆରକୂଳରେ ଥାଏ କଳ୍ପବଟ
କାମ୍ୟ ସ୍ୱପ୍ନ, ଘୋର ମନସ୍ତାପ

ପବନରେ ସଞ୍ଚରିଯାଏ
ଶୂନ୍ୟତାର ଭାବ,
କିଛି ହୁଏନା ଜଙ୍ଗଲର
ତରକା ହରିଣୀ ଗର୍ଭବତୀ
କୁକୁର ପାଲରେ ଅସ୍ତବ୍ୟସ୍ତ
ନିରୀହ ପଶକୁ ଅଜାଡିଦିଏ
ମୋ ଅଜାଣତରେ ମୁଁ
ତାକୁ ଦେଇ ସାରିଥାଏ
ସ୍ୱପ୍ନ ଯାଦୁ, କହିଦିଏ
ଚୁପିଚୁପି ଯା' ସଞ୍ଚରିଯା
ପକ୍ଷୀର ଅଜଣା
ଗୀତ ସହିତ ପବନ
ହୋଇଯା, ମା ହୋଇଯା ।

ଗାଁ ଗାଁରେ ଯାତ୍ରା ଚାଲିଥାଏ
ହରୀଣ ଜଙ୍ଗଲ ଭିତରେ ମିଶାଇଦିଏ
ନିଜର ରଙ୍ଗ
ଘଟୁଥାଏ ଆତ୍ମମୋଚନ ।
ହାତୀ ବନସ୍ତରେ ପିଙ୍କାରୁଥାଏ
ସାଥୀ ଖୋଜି ଖୋଜି ।

ନଉକା ଭିତରେ ଗୋଡ ଲମ୍ବାଇ
ବସିଥାଏ ରଜାଝିଅ
ଗେଣ୍ଡାଳିଆ ନ ଥାଏ ଆକାଶରେ

ରାଜାଝିଅର ଉଦାସୀ ସୁର ବିଞ୍ଛିଦେଉଥାଏ
ଲାବଣ୍ୟବତୀର କୋହ
ନିଶି ଶେଷରେ ନ ଥାଏ ପ୍ରେମର
ରାଜକୁମାର । ଝରକା ସେପଟୁ ହସୁଥାଏ
ଫୁଲିଆ ତାରା ପ୍ରଶ୍ନିଳ ଚାହାଣୀରେ

ଯାତ୍ରା ସରି ଆସିଲାଣି
ତରା ସବୁ ନିଜ କିମିଆ ସାରି ବାନ୍ଧି ସାରିଲେଣି
କାହାଣୀର ପେଡି
ଅରଣ୍ୟକୁ ଫେରିବାର ସମୟ ହେଲାଣି
ଚଢ଼େୟା ଫେରିଲାଣି ନିଜ ରୂପକୁ
ଗାଁ ଦାଣ୍ଡର ବୟସ ବଢ଼ିଲାଣି
ଭିତରେ ଭିତରେ ସଞ୍ଚରି ଗଲାଣି
ଚଢ଼େୟାଣୀର ଗୀତ
ମଞ୍ଚ ମଣ୍ଡପ ମଶାଣି ସବୁ ଏକାକାର
ଫେରିବାର ସମୟ ହେଲାଣି ।

ଫେରିବାର ସମୟ ହେଲାଣି
ଅରଣ୍ୟକୁ ଯିବାର ବେଳ ହେଲାଣି ।



# ମୋ ସ୍ନାୟୁ ଭ୍ରମିତ

ମୋ ସ୍ନାୟୁ ଭ୍ରମିତ ହୁଏ
ଅତୃପ୍ତ ମନ ଓ ମାନିନୀ ।
ଧୂଆଁରେ ଡିଆରେ ଋତୁ
ଋତୁରେ ଜାହ୍ନବୀ
ଜାହ୍ନବୀର ତୀରେ ତୀରେ
ରୋମାଞ୍ଚକ ପରକାଳ ସାଥୀ
ମୁଁ ବଢ଼ାଏ ହାତ ମୋର
ତୁମରି ଆକାଶ ଛୁଇଁ
ସ୍ପର୍ଶ ଖାଲି ଥରେ ମାତ୍ର
ଦେହ ଉଲ୍ଲାସର ।

ସ୍ପର୍ଶ ଏକ ଜାଗତିକ କ୍ରିୟା
ଫଳ ତାର ମଧୁରୁ ମଧୁର
ତୁମରି ସ୍ପର୍ଶରେ ଗଢ଼େ
ମାନବୀୟ ଅବସ୍ଥିତି ସବୁଜ ବିଗ୍ରହ

ନୀରବରେ ଆତ୍ମା ମୋର
ଅନ୍ୱେଷଣ କରେ
ପ୍ରିୟ ସେଇ ପରମ ଋତୁକୁ

ପରିପୂର୍ଣ୍ଣ ଭାବେ ଯିଏ
ଅବତରି ନାହାନ୍ତି ଏଯାଏଁ ।

କାଳର ପାଚେରୀକୁ
ସ୍ପର୍ଶ କରେ ମହାକାଳ
ଆକର୍ଷିତ ହୁଏ ମନ
ପୃଥିବୀ ବେଗରେ
ଆତ୍ମା ଥାଏ ସ୍ଥିର ଅଚଞ୍ଚଳ ।

ଦୃଶ୍ୟ ପରେ ଦୃଶ୍ୟ
ଗଢୁଥାଏ ଚିତ୍ରକର
ସ୍ୱର୍ଗର ତାରାଟିଏ
ମେଲୁଥାଏ ବୀଜପତ୍ର
ସ୍ନାୟୁର ବିମ୍ବରେ ।

ତୃପ୍ତ ହୁଏ ଧୂଆଁ ଧୂଳି
ଋତୁସ୍ନାନ ସାରି
ଭ୍ରମିତ ପ୍ରେମର ପକ୍ଷୀ
ଶିକାରୀର ଫାଶ ଡେଇଁ
ଆକାଶକୁ ଚକ୍‌କର କାଟେ
ସ୍ନାୟୁ ଚହଲାଇ
ଋତୁର କୋଣେ କୋଣେ
ବାଜି ଉଠେ ପ୍ରୀତି ସାହାନାଇ ।

❖❖❖

# ଦୃଶ୍ୟ

ଦୃଶ୍ୟ ସବୁବେଳେ ଦୃଶ୍ୟହୀନ
ଆଖିମାନେଇ
ଦେଖିବା ଅବଧାରିତ ।
ମଜବୁତ ବୃକ୍ଷର ଡାଳରୁ
ଝରୁଥାଏ ପତ୍ର
ତାର ବିରହ ସଂଗୀତ ସବୁଜ
ଧୂସର ଓ ସଚିତ୍ର ।
ମଗ୍ନ ପ୍ରକୃତି କୋଳେଇ ନିଏ
ଆଗ୍ରହରେ ଏଥର ପ୍ରାପ୍ତି ଅପ୍ରାପ୍ତି
ଗୋଟିଏ ବିନ୍ଦୁରେ ।

ଶାଣଦିଆ ସମୟର ଧାର
କାଟି ପାରେନା ସାମାନ୍ୟ ଶବ୍ଦକୁ
ସେ ବଢରୁ ଥାଏ, ଗଜୁରୁଥାଏ
ବିଶାଳ ଦ୍ରୁମ ହୋଇ
ଶବ୍ଦରୁ ଅର୍ଥ, ଅର୍ଥରୁ ବିନ୍ୟାସ
ଶାଖା ପ୍ରଶାଖା ମେଲାଇ ।

ଦୃଶ୍ୟ ଏକ ସୁନ୍ଦର ସ୍ରୋତ
ପ୍ରକୃତି ପରି କମନୀୟ ତ
ଶବ୍ଦ ପରି ପ୍ରାଚୁର୍ଯ୍ୟମଣ୍ଡିତ ।



# ପକ୍ଷୀର ଗୀତ

ମୁଁ ଫୁଲ ତୋଳିନି
ତମ ବଗିଚାର
ମୁଁ ପ୍ରେମ କରିନି
ତମକୁ, କାହାକୁ କେବେବି !

ଜହ୍ନ ଡାକିଲେ ନିଶବ୍ଦ ରାତିରେ
ମୁଁ ଶୁଣିଛି
ଗଛ ଭାଙ୍ଗିଲେ ଚଡକ ମାଡରେ
ମୁଁ ଚେଇଁଛି
ପକ୍ଷୀର ଅଣ୍ଡରେ ବେଳେ ବେଳେ
ଶବ୍ଦ ଉଠାଇ ଥୋଇଛି
ନିର୍ଦ୍ଦିଷ୍ଟ ସ୍ଥାନ ପାଇନି
ଏଠି ସେଠି ସବୁଠି ସାଇତିଛି
ଶାବକ ଜନ୍ମିଲାବେଳକୁ
ସବୁଠି ବସା ହସୁଛି ।

ଭଙ୍ଗା ଗଛ ପୁଣି କଅଁଳିଲା
ବେଳକୁ
ଜହ୍ନ ଡାକୁଛି କଣ -

ଶୋଇ ପଡିଲୁକି, ଚମକୁଛୁ ଥରକୁ ଥର
ସବୁଥର ପରି ?

ମୁଁ ଭିତରେ ଭିତରେ
ସ୍ୱପ୍ନ ଦେଖୁଛି
ସବୁଜ ଅରଣ୍ୟର
ସମୁଦ୍ରର ଲହଡିକୁ
ରଙ୍ଗଉଛି ଜହ୍ନର ହସରେ

ଅନନ୍ତକାଳର ଶବ୍ଦଟିଏ
ଫୁଲ ହୋଇ ଫୁଟିଛି
ତମ ବଗିଚାରେ
ମୁଁ ତୋଳିନି
ତୋଳିବାର ସ୍ପର୍ଦ୍ଧା ବି କରିନି
ହେଇ ସୃଜନୀର
ପ୍ରଣବ ଓଁକାର ପରି
ଆକାଶର ସ୍ୱପ୍ନ ପରି
ପକ୍ଷୀର ଗୀତ ଶୁଭୁଛି ।

❖❖❖

# କୋଣାର୍କ

ବ୍ରାହ୍ମଣୀ ବାଲିରେ ସେ
ତା'ର ସମସ୍ତ ପୋଷାକ ଖୋଲିଥିଲା
ମୁଁ ଭେଟିଥିଲି କୋଣାର୍କକୁ ।

ତା' ଦେହର ଉତ୍ତାପ ଧ୍ୱାସରେ
ପୋଡିଯାଇଥିଲା ବାଲି
ବ୍ରାହ୍ମଣୀର ପାଣି
ମନ ଓ ହୃଦୟ
ତରଳି ବୋହିଯାଇଥିଲା
ମୁଁ ସରି ଯାଇଥିଲି
ବୁନ୍ଦା ବୁନ୍ଦା ପାଣି ହୋଇ
ଭିଡିଯାଇଥିଲି ଅନ୍ଧାରରେ

କେବଳ ତାଆରି ସ୍ୱର
କେବଳ ତାଆରି ଧଡକନ
ପ୍ରତିଧ୍ୱନିତ ହେଉଥିଲା
ମୋ ଜାଗାରେ ଗଢ଼ି ଉଠିଥିଲା
କୋଣାର୍କ ଦେହର ଦାହର ।

କୋଣାର୍କ ପ୍ରସ୍ତୁତ ଥାଏ
ସବୁ ଅଦଉତି ପରେ ବି
ପୋଷାକ ଖୋଲିଦିଏ ପବନ ଖେଳରେ
ବୋକଦିଏ ମେଘର ଝଲକରେ
ସଂଗମ ରଚୁଥାଏ ଆକାଶ ସହ
ସଞ୍ଜ ଓ ସକାଳେ ।
ମୁଁ ଭେଟେ ରାତିର ନୀରବ
ପ୍ରହରେ କୋଣାର୍କକୁ ।

କୋଣାର୍କ ସହ ସାମ୍ନାସାମ୍ନି ହେଲେ
ମୁଁ ଭୁଲିଯାଏ ବାଟ
ଡଙ୍ଗା ଜାଣେନା କୂଳର ଠିକଣା
ନଈ ଚିରଦିନ ବାଟବଣା
ନିଜ ନିଜର ସ୍ମୃତି ସହ ସ୍ୱପ୍ନ ସହ
ସ୍ପଷ୍ଟ ହୁଏ କୋଣାର୍କ ।

ମେଘ ରାତିରେ କୋଣାର୍କ
ବିଜୁଳି ଶବଦରେ ଝଲମଲେଇଯାଏ
ଭାଙ୍ଗିଯାଏନା ତାର ଯୌବନ
ବରଂ ମୁଁ ଚଡକି ଯାଏ ବାରବାର ।

ଯେଉଁ ପବନ ଛୁଇଁ ଛୁଇଁ
କୋଣାର୍କକୁ ଆନମନା ହୁଏ
ସେହି ପବନ ମାଡରେ
ମୁଁ ହଜାଇ ଦିଏ ମୋର ଯନ୍ତ୍ରଣା

କୌଣସି କବିତା ରଚି ପାରେନା
କୋଣାର୍କର ଇତିହାସ
ତାର ଦୁଃଖ ଓ ଦରଦ
ମୁଁ ଭାଙ୍ଗୁଥାଏ ପ୍ରସ୍ଥ ପ୍ରସ୍ଥ
ପବନ ମାଡରେ ।

ପରସ୍ପରର ପ୍ରେମ ଓ ଭାବନା
ଧକ୍କା ଖାଏ
ବ୍ରାହ୍ମଣୀ ଚିରଦିନ ମୋ ସ୍ୱପ୍ନରେ ଘୁମାଏ ।

ସେ ଉଲଗ୍ନ ହେଲାବେଳେ
ଗରମ ହୋଇଯାଏ କୂଳ
ମୁଁ ଦେଖିନି କେବେବି କୋଣାର୍କକୁ
ମୋର ପ୍ରେମିକାକୁ ଉଛନ୍ନ ଆକୁଳ ।

ସେ ପୋଷାକ ଖୋଲିବା ସତ୍ତ୍ୱେ
ମୁଁ ଛୁଇଁ ନଥିଲି
ଦେଖିନଥିଲି ତା ଦିହ
ସେ କୋଣାର୍କ ପରି
ନିଜ ଶିବିରରେ ସୁରକ୍ଷିତ
ମୁଁ ବି ।



# କ୍ରିକେଟ୍

କ୍ରିକେଟ୍ ଅମୂଲ ମୂଲ ।
ହାତୀ ପରି
ମଲେ ଲକ୍ଷେ, ଥିଲେ ଲକ୍ଷେ ।
ଲକ୍ଷ ତ ଛାର
କୋଟିକୁ ଛୁଇଁଛି
ନାଭିରେ ତାର ସୁନାଦୀପ
ଜଳୁଛି ଜାଳୁଛି ।

କସ୍ତୁରୀ ମୃଗ ପରି ଖୋଜୁଛି
ଘୂରୁଛି,
ଦୁନିଆଁ ସାରା ।
ସେ କରାଏ
ଖେଳାଏ
ଟଙ୍କାଦିଏ ଅଖଳାଖଳ
ସେ ଜାଣେ କିଏ ଜିତିବ
କିଏ ବାଜିମାତ୍ କରିବ ।

ତା ସାମ୍ନାରେ ଖେଳାଳୀ ତୁଚ୍ଛ
ପିଚ୍ ତୁଚ୍ଛ

ବଲ୍ ବା ବେଟ୍ ତୁଚ୍ଛ
ଏକମାତ୍ର ସେହିଁ
ଖେଳର ତ୍ରାଣକର୍ତ୍ତା
ଖେଳର ଭବିଷ୍ୟତ ବକ୍ତା
ସେ ନିର୍ଦ୍ଧାରଣ କରେ
ଖେଳର ଭାଗ୍ୟ
ଖେଳ ଓ ଖେଳାଳୀ ନିମିତ୍ତ ମାତ୍ର
ଦର୍ଶକ ଜଳକା
ଖବର କାଗଜ ମୁଖର
ବେଟିଂ ଓ ଫିକ୍ସିଂ ଦୁଇଟି
ଶବ୍ଦରେ ।

କ୍ରିକେଟର ଗୀତ ଗାଉଥିବା
କବି
କ୍ରିକେଟ୍ର ସ୍ୱପ୍ନ ଦେଖୁଥିବା
ପ୍ରେମିକା
କ୍ରିକେଟରେ ମସ୍‌ଗୁଲ୍ ପାରିଷଦ ଓ ରାଜା
କ୍ରିକେଟର ଜୟଗାନ କରୁଥିବା
ସର୍ବସାଧାରଣ
ମୁହଁ ଫେରେଇ ନେଲେ
କବି ସଂଶୋଧନ କରି ଦେଲେ
କବିତାର ଧାଡି
" କ୍ରିକେଟ ଗଣର ନୁହଁ ଜଣର
କ୍ରିକେଟ ଧନହୀନର ନୁହଁ ଧନୀର ।

କ୍ରିକେଟ୍ ପାଲଟିଗଲା
ଗଡନିଆଁର ନଈ
କ୍ରିକେଟ ପାଲଟିଗଲା
କ୍ଷୁବ୍ଧିତା ବାଘୁଣୀ
ସମସ୍ତଙ୍କୁ ଭାଜିଲା, ରାମ୍ପିଲା
ଲହୁ ଲୁହାଣ କଲା ।

ଇତିହାସ ସାକ୍ଷ୍ୟ ଦେଲା
" ସମସ୍ତେ କ୍ରୋନିଏ ନୁହନ୍ତି"
ଆଭାସୀ ସତ୍ୟକୁ ଦେଖି
ପରମ ସତ୍ୟ ବୁଝିଲେ
ବିଶ୍ୱଜନ ।

କ୍ରିକେଟ୍ ଗର୍ଜିଲା କ୍ରୋଧରେ
ଆମ ସୋହାଗସିକ୍ତ ପ୍ରେମକୁ
ଚାଟିନେଲା ସମୟର ବୁକି
ପ୍ରତିଶୋଧର ଗର୍ବରେ ।

ଭଲ ଖେଳିଲେ ଡର, ବୁକିର
ଭଲ ନ ଖେଳିଲେ ଡର, ନଗ୍ରଜନର
ଅବିଶ୍ୱାସର ଚେର ଖୁବ୍ ଗହୀର ।

ଖେଳାଳୀ ଛକ୍କା ମାରିଲେ, ଟଙ୍କା
ଖେଳାଳୀ ଶୂନ ମାରିଲେ ଟଙ୍କା

ଦର୍ଶକ ପାଇଁ ସବୁ
ଭୋଜବାଜି ଇନ୍ଦ୍ରଜାଲ ।

ଉଦାସୀନ ଘୋଷକ
କହି ପାରେନା ଆହା- ଅବା ବାଃ
ସବୁ ନିର୍ଦ୍ଦିଷ୍ଟ ସବୁ ଫିକ୍ସିଂ ।

ଜଳକା ତୃତୀୟ ପୁରୁଷ
ବସିଥାଏ ଦାରୁଭୂତ ମୁରାରୀ
ଆଖି କହେ ଆଖିରେ
ସେ ଛକ୍କା ନୁହେଁ
ଦଗାଦିଆ ଭୁରୁଡ଼ି ।
ମନ କହେ ମନରେ
ଏ ଖେଳ ନୁହେଁ
ଅପୂର୍ବ ଜୁଆଚୋରୀ ।

ଦିଲ୍ ସବୁ ସିଲ୍ ଏଠି
ମନହୀନ ମନ୍ଦିର ।
ତ୍ରିସତ୍ୟର ଦିଅଁକୁ
ତ୍ୟାଗର ନୈବେଦ୍ୟ ଲୋଡା
ଲୋଡା ଖାଲି ପ୍ରେମର ପୂଜାରୀ ।

ଆଜିର ଖେଳ ଧେତ୍ ତେରୀ
ଆଜିର ଖେଳାଳୀ ଧେତ୍ ତେରୀ

କ୍ରିକେଟ ଦୃଶ୍ୟର ଭୋଜବାଜି
ନିକମା ମଣିଷର ବାକ୍ ଭୁରୁଡି
ଗହଳ ଚହଳ ଭିତରେ ବଜାର ଚାତୁରୀ
ବେଠିକ୍ ସବୁ ଠିକ୍
କଳାବଜାରୀର ଦୁନିଆରେ
ବୁକିର ଜାଗିରୀ ।

ସେ ଖେଳ କାହିଁ ?
ସେ ସତ୍ୟ କାହିଁ ?
ସେ ତ୍ୟାଗ ଓ ତିତିକ୍ଷା କାହିଁ ?
ପ୍ରେମ ଓ ସୌହାର୍ଦ୍ଦ୍ୟ କାହିଁ ?
ସଭିଙ୍କର ପ୍ରିୟ କ୍ରିକେଟ୍ କାହିଁ ?
ସତ୍ୟ ଶିବ ସୁନ୍ଦରର
ବିଶୁଦ୍ଧତାକୁ ଚାଟିଗଲା
ବୁକିର ବେପାରୀ ନଈ ( ? )
ଫିକ୍ସିଂର ଝଡ଼
ଏକାକାର କରିଦେଲା
ଖେତ ଆଉ ବାଡ
ଫିକ୍ସିଂର ହରିହାଟ
ମଣିଷତ୍ୱ ଲୁଟିନେଲା
ବିଞ୍ଚିଦେଲା ବିଶ୍ୱସାରା
ସରଳ କପଟ ।



## ବନ୍ଦୀ

ରାତ୍ରୀର ରାକ୍ଷସ ପରି
ରହି ରହି ଗର୍ଜୁଚି
କରମଣ୍ଡଳ ଟ୍ରେନ
ଶୂନ୍ୟତାର ମଦମତ୍ତ ସମୟକୁ
ଛୁଆରିଆ କରୁଛି
ଗର୍ଭିଣୀ ପବନ ।

ଅନ୍ଧାର ଭିତରେ ନାଟକ
ନାଟକ ଭିତରୁ ଉହୁଁକି ଆସୁଛି
ଖଳ ଚରିତ୍ର ସବୁ
ଛିନ୍‌ଭିନ୍ କରିବାକୁ କିଶୋରୀ କଳିକା
ସ୍ୱପ୍ନର ଫୁଲ
ସ୍ମୃତିର ପାଖୁଡା ।

ନିଆଁ ପରି ଗ୍ରାସି ଯାଉଛି
ଭୋକ
ପୋଡିଯାଉଛି ନିରୀହ
ଶୈଶବ
ଆତ୍ମା ଓ ପରାଣ ।

ରାସ୍ତା ସାରା ରକ୍ତର
ପାରଣା
ହାତୀ ଦେବି
ଛଡିଦେବି
କ୍ଷୁଦ୍ରାଦପିକ୍ଷୁଦ୍ର
ପେଁକାଳି ବଜାଇବାର
ବାହାନା ।

ସମୟର ଗତି ପାଇଁ
ନିରୀହତାର ରାତି ପାଇଁ
ବଳୀ ପଡୁଛି
ଅରଣ୍ୟେ
ବଳି ପଡୁଛି ହାତୀ
ରହି ରହି ରହସ୍ୟର ଉଲଙ୍ଗତାରୁ
ଲଂଫ ମାରୁଛି ଟ୍ରେନ
ଚିତ୍କାର ଓ ଶିତ୍କାରକୁ ଏକାକାର କରି ।



## ବାଘୁଣୀ

ମତୁଆଲା ସମୟ
ଭୟାତୁର ଲୋକ ପରି
ହିଂସ୍ର, ରକ୍ତମୁଖା
ବାଘୁଣୀର ପଦ ଚିହ୍ନ ସହର ସାରା ।

କେଜାଣି ବାଘୁଣୀର
ପ୍ରଥମ ଶିକାର କିଏ
ସେଇ ଉଦ୍ଧତ ଯୁବକ
ଗଣଧର୍ଷିତା ଯୁବତୀ
ନା ଗଳିତ ସମୟ ?

ବାଘୁଣୀର ଗର୍ଜନ ସହର ସାରା
ଆତଙ୍କର ବୋମା ଚତୁର୍ଦ୍ଦିଗରେ
ଏବେ ଅନ୍ଧାର
ଚାରିଆଡେ ଏକ ଶୀତଳ ହିଂସ୍ର
କୁହୁଡିର ଛାୟା

ଖଣ୍ଡେ ଖଣ୍ଡେ ଜଙ୍ଗଲ ଉଜୁଡି
ସହରରେ ବସ୍ତି କରିଛନ୍ତି
ଜଙ୍ଗଲ ଅପେକ୍ଷା ବାଘୁଣୀ
ବସ୍ତି ଭିତରେ ନିରାପଦ

କେଜାଣି, ବାଘୁଣୀ କେତେବେଳେ
ଦେଖାଦେବ ।
ଜଙ୍ଗଲର ହରୀଣ ଅପେକ୍ଷା
ସହରର ଯୁବକ ଯୁବତୀ
ଶିକାର ବେଶ୍ ସହଜ ।

ବନପାଳ ଖୋଜୁଛି ବାଘୁଣୀ କାହିଁ
ନଗ୍ରଜନ ଖୋଜୁଛନ୍ତି ବାଘୁଣୀ କାହିଁ
ରାତି ଡ୍ୟୁଟିର ଗଞ୍ଜୋଡ଼ ପୋଲିସ
କହୁଛି କାଲି ରାତି ବାଘୁଣୀ ଝପଟିଥିଲା
ବସ୍ତି ଭିତରେ
ମୁଁ ଦେଖିଛି, ଦେଖିଛି ।

ସହର ସାରା ଏକ ଆତଙ୍କର ବାତାବରଣ
ଅଶ୍ୱସ୍ତିକର ପରିବେଶ
ବନପାଳ ଖୋଜୁଛି ବାଘୁଣୀ
ଠାବ କରୁଛି ବୃଦାମୂଳରେ ରକ୍ତ ଓ ପାଦଚିହ୍ନ
ଆତଙ୍କ ଖେଳି ଯାଉଛି ପବନରେ
ଗାଁରୁ ସହର ସହରରୁ ବିଧାନସଭା

ମତୁଆଲା ସମୟ
ହିଂସ୍ର ଓ ରକ୍ତମୁଖା
ରାତ୍ରି ପୋଲିସ ତାରିଫ୍ କରୁଛି
ସାଲୁଆର ଭିତରୁ ଲମ୍ଫ ମାରୁଥିବା ବାଘୁଣୀକୁ ।



# ସ୍ୱପ୍ନର ସମ୍ପର୍କ

ଅରଣ୍ୟରେ କେଜାଣି କିଏ
ଘୁମୁରୁଛି
ଛେଉଣ୍ଡ ଆତ୍ମାର ଦୁଃଖ ନେଇ

ଚାରିଆଡେ ନୀରବ ବିସ୍ତାର
ସନସନ ପବନର କରତ
କାଟି ଚାଲିଛି
ସୁଖ ଓ ସମୃଦ୍ଧିର ବୃକ୍ଷ ।

ଏବେ ଅନ୍ଧାର
ଏବେ ଯନ୍ତ୍ରଣା
ଗୋଟେ ରାଣ୍ଡିପୁଅ ଅନନ୍ତା ପରି
ସମୟ ଶୋଷି ନେଉଛି
ଜଙ୍ଗଲର ସବୁଜ ଶିରି ।

କେଜାଣି, କାହାର ହସ ଓ ଶୀତ୍କାର
ଚରି ଯାଉଛି ସାରା ଆକାଶ ସାରା ଅରଣ୍ୟ
ବଣ୍ୟ ନିଆଁ ପରି
ଉଜାଡି ଦେଉଛି ପକ୍ଷୀର ଶାବକ
ସରୀସୃପର ଘର ଅଜଣା ପ୍ରାଣୀଙ୍କ ସ୍ୱପ୍ନ

କେଜାଣି, ରାଜ ରାସ୍ତାରେ କିଏ
ବଳାତ୍କାରର ଶିକାର
କେଜାଣି
କିଏ ହରାଇ ସାରିଛି ସବୁ ସମ୍ପର୍କ
ମଣିଷ ପଣିଆ ।

ବାଘୁଣୀ ମାତିଛି କହି
କିଏ ଫେରାର
ମିଛି ମିଛିକା ସ୍ୱପ୍ନ ଦେଖାଇ
ଦୂରନ୍ତ ଅଭିଯାନ ପାଇଁ
କିଏ କାଟି ଦେଉଛି ବେକ
ପିଚିକି ପଡୁଛି ରକ୍ତ
ଉଜୁଡି ଯାଉଛି ସ୍ୱପ୍ନ ହାତୀମାନଙ୍କ
ମା' ପେଟର ଶାବକ ବି
ସୁରକ୍ଷିତ ନୁହଁ
ଜଙ୍ଗଲ ବି
ମାଓବାଦୀଙ୍କ ବାରୁଦରେ ଭରା
କେଜାଣି, କିଏ
ସ୍ୱପ୍ନ ଦେଖିବା ଆରମ୍ଭ କଲାଣି
ଡହ ଡହ ମଧ୍ୟାହ୍ନରେ
ସମ୍ପର୍କ ଯୋଡିଲାଣି
ବାଘୁଣୀ ସହ, ଜଙ୍ଗଲରେ ।



## ପ୍ରେମର ବ୍ୟାକରଣ

ଗନ୍ଧ କହିଲା ମୁଁ
ଅନ୍ଧାରରେ ସ୍ୱର୍ଗ ଖୋଜେ
ମାତାଲ ସମୟ
ଭାଡୁଆ ପବନ
ଚହଲାଇ ପାରେନା ମୋତେ
ମୋ ସଂକଳ୍ପରୁ

ବାତ୍ୟାରେ ଭାଙ୍ଗିଯିବା ପରେ
ଗଛରେ ନୂଆ ସ୍ୱପ୍ନ
ନିଆଁରେ ଜଳିଗଲା ପରେ
ଉକୁଟେ ଭୂଇଁରେ ଘାସ

ମୁଁ ଥାଏ ମୋ ନିଶାରେ
ଅନନୁଭୂତ ଏକ ସ୍ୱପ୍ନରେ
କାହାର ମିଛି ମିଛିକା ନିମନ୍ତ୍ରଣ
କେଜାଣି ଆନମନା କରିପାରେ
କ୍ଷଣିକ ପାଇଁ
କିନ୍ତୁ ହଟାଇ ପାରେନା ମୋର
ଲକ୍ଷ୍ୟରୁ :

ବେଳେ ବେଳେ ନିରହଙ୍କାର
ଅରଣ୍ୟ ମୋତେ
ଆକର୍ଷିତ କରେ
ଏକାକୀ ପକ୍ଷୀଟିଏ ଗୁମୁରି
ମୋତେ ଚେତେଇ ଦିଏ
ହେଇ ଦେଖ ସମୟକୁ
ଜୀବନର ଗତିକୁ ।

ସ୍ୱପ୍ନ ଉପରେ ମାଡିଯାଏ କୁହୁଡି
ଗଛ ଥାଏ ମୌନ
ଆମ୍ବାରୁ ଗୁଞ୍ଜାରୁ ଥାଏ ମିଳନର
ଗୀତ ପକ୍ଷୀର ଭାଷାରେ
ପ୍ରତିଟି ପତ୍ରକୁ ଥରାଇ
ଲେଖା ହେଉଥାଏ
ପ୍ରେମର ବ୍ୟାକରଣ

ଗଛ କହୁଥାଏ
ମୁଁ ଖୋଜୁଥାଏ ସ୍ୱର୍ଗ
ସଂକଳିତ ପ୍ରେମ
ପକ୍ଷୀର କାକଳୀରେ
ଭଲ ପାଇବାର ଉଚ୍ଚାରଣ ।



## ସହର

ଧୀରେ ଧୀରେ ଗୋଟେ ଅନିବାର୍ଯ୍ୟ
ଘୋଷଯାତ୍ରାରେ ବିଭୋର
ସାରା ସହର ।

ଏଠି ଆକାଶ ନୀଳ ନୀଳ ନୀଳନୟନା
ଏଠି ମାଟି ଧୂସର ଧ୍ରୁପଦୀର ଭବ୍ୟ ବାହାନା
ବୋଲି ଆମେ ଆଙ୍କିଛୁ କାକ୍‌ଟସ୍, ଭୋକ
ଯଉତୁକ ଯୁଇ, ବଳାତ୍କାର, ଧର୍ଷଣର ସ୍କେଚ
ଗଳିରେ ଗଳିରେ ମନ ମତାଣିଆ ମଡେଲ
ଉଲଗ୍ନ ନାରୀର ଦେହଜ ବିଜ୍ଞାପନ
ଘରେ ଘରେ ପାନଶାଳା, ମଧୁଶାଳା
ସୁରାପାତ୍ରର ରଙ୍ଗୀନ ମହୋତ୍ସବ

ଶିରାଳ ମଣିଷମାନଙ୍କୁ
ଗଳିର ବୁଲା କୁକୁରମାନଙ୍କୁ
ହଟାଇ ଦିଆଯାଇଛି ରାସ୍ତାକଡରୁ
ଉଠାଦୋକାନୀ, ବୁଲା ବିକାଳୀଙ୍କୁ
ଥଇଥାନ କରାଯାଇଛି ସହର ଉପକଣ୍ଠରେ
ଅରଣ୍ୟ ଦାଢ଼ରେ
ଶସ୍ତା ଦେହଜୀବୀଙ୍କୁ ରଖାଯାଇଛି
ଗାଁ ସନ୍ନିକଟ ଦେବାଳୟ ନିକଟରେ

ସହର ଦେଇ ମାଡି ଚାଲିଥିବା ନଦୀ
ଜଙ୍ଗଲ ଓ ଆକାଶକୁ
ଦିଆଯାଇଛି ନୂଆ ରୂପ,
ଐଶ୍ୱର୍ଯ୍ୟ ଏବଂ ମଡର୍ଣ୍ଣ ଲୁକ୍

ଖଞ୍ଜାଯାଇଛି କୃତ୍ରିମ ଝର୍ଣ୍ଣା
କାକ୍‌ଟସ୍ ଜଙ୍ଗଲ
ଧୂ ଧୂ ମଧ୍ୟାହ୍ନର ଚୋରାବାଲି,
ଯୋଗୀର ଥାଳ ଓ କେନ୍ଦେରା
ହଟାଇ ଧରାଇ ଦିଆଯାଇଛି
ଭାୟୋଲିନ ଓ ମଦବୋତଲ,

ନାରୀମାନେ ଏଠି ନଦୀ ପରି  କଳକଳ
ପୁରୁଷମାନେ ଏଠି ମାଛି ପରି ଭଣ ଭଣ
ସମୟ ଚୁପ୍‌ଚାପ୍ ଛୁଇଁ ଛୁଇଁ
ଯାଏ ସହରର ଥଣ୍ଡା କପାଳ
ଓ ଉଷୁମ ଦିଲ୍

ଏକ ମନଛୁଆଁ ବର୍ଷା
ଅନିବାର୍ଯ୍ୟ ଘୋଷଯାତ୍ରା ପାଇଁ ପ୍ରସ୍ତୁତ ସହର  ।

ସ୍ୱପ୍ନ ଭିତରେ କେମିତି ଦିଶେ
ସହରର ରଙ୍ଗ  ।
କଳାକଳା ଲାଲ ଲାଲ ନା ସବୁଜ ସବୁଜ ।



# ଜୀବନ ଖୋଜା

ପୃଥିବୀର ନାଭିମଣ୍ଡଳରେ
ଉତ୍କଣ୍ଠାର ପୂର୍ଣ୍ଣଛେଦ ପକାଇ
ଗୋଟେ ମହୋତ୍ସବ ପାଇଁ
ପ୍ରାଣପାତ ଜୀବନ

ଜୀବନ ଖୋଜୁଛି ଜୀବନ
ସ୍ୱପ୍ନର ରାଶି ନକ୍ଷତ୍ର ଦେଇ
ଗତି କରୁଛି ପବନର ପାଗଳାମି
ବିଭୋର ବସନ୍ତ ଭିତରେ
କେହି ଜଣେ ଖୋଜୁଛି ଆକାଶ ।

ଭୋକ ମେଣ୍ଟାଇବାକୁ ପ୍ରକୃତିର
ଶୋଷ ମେଣ୍ଟାଇବାକୁ ଅରଣ୍ୟର
ଜାରି ରହିଛି ଅନ୍ୱେଷଣ
ଜୀବନ ଆଡ଼କୁ ;

ଅଗଣାର ମହାଦୀପ ଭିତରେ
ସ୍ୱପ୍ନ ପ୍ରୟାଣ ମହାଶୂନ୍ୟର
ଏବେ ଏକ ଦିବଂଗତ ସ୍ମୃତିର

ଋସାଭାସ ହୋଇ ଜୀବନ
ମରୁଭୂମିର କପଟ ସଂଳାପ ଭିତରେ
ଆଖିର ଧାପେ ନିଅାଁରେ
ଢଳିଯାଏ ସ୍ଥିର ହୃତପିଣ୍ଡର
ଇତିହାସ
ନାୟକ ହଜି ସାରିଥାଏ
ଅରଣ୍ୟରେ
ନିର୍ଭେଜାଲ ପ୍ରେମର ମୋହର
ମାରି ପ୍ରେମିକା
ବିଭୋର
କାହାର ଅପେକ୍ଷାରେ

ମହୋତ୍ସବ ପାଇଁ
ଜୀବନ ପରେ ଜୀବନ
ସ୍ୱପ୍ନ ପରେ ସ୍ୱପ୍ନ
ଜାଗି ରହିଛି ଅନ୍ୱେଷଣ
ପୃଥିବୀର ନାଭିମଣ୍ଡଳକୁ ଉଲୁସାଇ
ଲେଖା ଚାଲିଛି ଆକାଶରେ
ନୀଳ ବଉଦର କବିତା
ଜାଗି ରହିଛି ଜୀବନ ଖୋଜା
କବିତା ପାଇଁ
ଦୃଶ୍ୟ ପାଇଁ
ସ୍ୱପ୍ନ ପାଇଁ ।



## ଜୀବନର ନୀଳ ହସ୍ତାକ୍ଷର

କିଏ ଯାଉଛି ସବୁ
ଅଳି ଅର୍ଦ୍ଧଳିଙ୍କୁ କାନିରେ ଧରି
କୋଉ ନର୍ଦ୍ଦମାକୁ,
ଦୁଃଖ ଘେରିଛି ସ୍ନାୟୁରେ
ଲହଡି ଭାଙ୍ଗୁଛି ସ୍ୱପ୍ନ ଦିହରେ ।

ଏତେ ଅନ୍ଧାର ଥିଲା କୋଉଠି
କୋଉ ନର୍କରେ
କୋଉ ଭୋଗ ବିନ୍ଦୁରେ
ଖାଲି ଖମାରେ
ଖୋଜୁଛି ଟିକିଏ ଫର୍ଚ୍ଚା
ଟିକିଏ ଭୋର
ଟିକିଏ ଆଶ୍ୱସ୍ତି ଆଲୋକର;

ଅଥଚ ସରୀସୃପଟିଏ ବିଷାକ୍ତ ଜିଭରେ
ଚାଟି ଯାଉଛି ସବୁ ସ୍ୱପ୍ନ ସବୁ ପ୍ରେମ
ସମୟର ଶିରାରେ ଚରିଯାଉଛି
ନୈଳିରକ୍ତ
ପ୍ରାଣ ଉଦ୍‌ବାସ୍ତୁ ପ୍ରାୟ ଉଦ୍ଧକବିକଳ

କା'ର ହାତ ଅଣ୍ଟାଳୁଛି
କୋଉ ଶିରାରେ ଜୀବନ
କୋଉ ଶିରାରେ ମରଣ
ପିଙ୍ଗଳାର ମୋହାନ୍ତର ।

ଚାରିଆଡେ ଭୟ ପରି
ସମୟର ରାଜତ୍ୱ
କିଏ, ଶୋଷିନେଉଛି ବିଷ
କିଏ ସାଜୁଛି ନୀଳକଣ୍ଠ
ସମୁଦ୍ର ମନ୍ଥିବା ପାଇଁ
କିଏ କେଉଁଠି
ବିଶ୍ୱସ୍ତ ମନ୍ତ୍ରୋଚାରଣରେ
ବଶମ୍ବଦ ପାରିଷଦ
ଯନ୍ତ୍ରଣାରେ କାତର ।
କିଏ, ଭୂମିଷ୍ଠ ହେବା
ପୂର୍ବରୁ ମନ୍ତ୍ରସିଦ୍ଧ
କିଏ, ସ୍ଥାପତ୍ୟର
ସୂକ୍ଷ୍ମ ରନ୍ଧ୍ରରେ ସ୍ଥାପିଛି
ବ୍ରହ୍ମନାଦ;

ବହୁଦୂର
କପୋତୀର କାନ୍ଦଣା
ପରି, କିଏ ସାଜିଛି ଗୀତ
ଝୁରି ହେବା ପାଇଁ

ସମୟକୁ ଖଣ୍ଡିଛି
ନୀଳଚକ୍ରୁ ନେତ ।

କିଏ ସ୍ୱପ୍ନରେ ସ୍ୱପ୍ନରେ
ଉଜାଗର
କିଏ ପ୍ରେମରେ ପ୍ରେମରେ
ପ୍ରତାରିତ
ଦୁଃଖର ସ୍ନାୟୁ କେନ୍ଦ୍ରକୁ
ଆନ୍ଦୋଳିତ କରି
କିଏ, ଲେଖୁଛି
ଜୀବନର ନୀଳ ହସ୍ତାକ୍ଷର ।

❖❖❖

# ନଚିକେତା

କେଜାଣି, କେମିତି ମୋ ଭିତରେ
ନଚିକେତାଟିଏ ଜନ୍ମ ନେଇଚି
କିପରି ବଢ଼ିଛି ଫଳିଛି
ଜିଜ୍ଞାସା କରୁଛି ।

ଆତ୍ମାଥାଏ ଆତ୍ମା ଭିତରେ
ସତ୍ତା ଥାଏ ନଶ୍ୱର ଶରୀରେ
ନଶ୍ୱର ଲୀନ ହୁଏ
ଅନଶ୍ୱର କାଳଜୟୀ
''ନ ହନ୍ୟତେ ହନ୍ୟମାନେ ଶରୀରେ''

ଗଛ ଚିରଦିନ ନଚିକେତା
ଏକ ସତ୍ୟ ଏକ ପ୍ରଶ୍ନ
ଏକ କିମ୍ବଦନ୍ତୀ
ଯୁଗ ଯୁଗ ଧରି
ମଣିଷ ବାଜଶ୍ରବା
ଏକ ମିଥ୍ୟା ଏକ ପ୍ରହେଳିକା
ଅଳୀକ ଉତ୍ତର ।

ସମୟର ବାଜଶ୍ରବା
ଧ୍ରୁବ ହାତରେ ଟେକିଦିଏ
ଶିଶୁ ନଚିକେତା ସମୟ ଦେଖୁଥାଏ

କିପରି ବଦଳିଯାଏ ଚିତ୍ରପଟ
କ୍ଷଣଭଙ୍ଗୁର ଉତ୍ତର
ଅଥଚ ପ୍ରଶ୍ନ ଥାଏ
କାଳହୀନ, କ୍ଷୟହୀନ
ଅଜର ଅକ୍ଷୟ ।

ପ୍ରଶ୍ନ ଗଛ ପରି
ଉଠୁଥାଏ ଆକାଶକୁ
ପଥ ଧାରେ ଅଜସ୍ର ତନ୍ୱୀ
ରୂପସୀ
ଇଡା ପିଙ୍ଗଳା ଖେଳ
ଅଳୀକ କୌଶଳ

ପ୍ରଶ୍ନ ଉଠୁଥାଏ ଅଗମ୍ୟ ଗଛପରି
ପ୍ରଶ୍ନ ଉଠୁଥାଏ ନଚିକେତା ପରି, ଦୃଢ଼ ସ୍ଥିର

ମୋ ଭିତରେ ଗଛଟିଏ କେବେ
ନଚିକେତା ପାଲଟିଛି
କିପରି, ମୁଁ ଜାଣେନା
ଜିଜ୍ଞାସା ଭିତରେ ଶାଖା ମେଲିଛି
ଅଳୀକତା ଭିତରେ ପ୍ରଖର
ଅନମନୀୟ
ସତ୍ୟପରି ।



## ଶୂନ୍ୟତାର ଦୃଶ୍ୟ

ନାଭିପଦ୍ମରୁ ଗଳୁଚି ଆସୁଛି
ଭବିତବ୍ୟ କେଜାଣି କୋଉ
ସ୍ୱର୍ଗ ଆଡେ
ଶୂନଶୂନ୍ ଭାବନାର କେନ୍ଦ୍ରରେ
ଲଂଘିଛି ଇତିହାସ ?
ଲେଲିହାନ ଜୀବନର ପୃଷ୍ଠାରେ
ଲେଖା ସରିଛି ସମସ୍ତ ଅକ୍ଷର
ଦୁଃଖର ଶୋକର
ଜର୍ଜରିତ ପ୍ରେମର ।

ଏବେ ଆଲୋକ ଆସିବା
ବିଳମ୍ବ ଅଛି
ଏକ ପ୍ରହେଳିକା ଭିତରେ
ଭ୍ରୂଣ ଖୋଜୁଛି ରାସ୍ତା
ନୀଳ ନୟନ ଭିତରେ ସୃଷ୍ଟି
ହେଉଛି ଶୂନ୍ୟତାର ଦୃଶ୍ୟ ।

କେଜାଣି, କାହାର ପ୍ରେମ
ଛନ୍ଦୁଛି ଜୀବନକୁ ଛଟପଟ କରି
କିଏ ଶୋଷିନେଉଚି ବିଷ

ଆତ୍ମାରୁ ରହି ରହି
ଚାରିଆଡେ ବ୍ୟାପିଯାଉଛି
ଏକ ଉଜ୍ଜ୍ୱଳ ଅନ୍ଧାର
ଲହ ଲହ ସାପର ଜିଭ ପରି,

ନେତାଙ୍କ ମିଛି ମିଛିକା
ଆଶ୍ୱାସନା ପରି ଦିଗନ୍ତରୁ ଶୁଭୁଛି
କାହାର ଡାକ,
ଘୋଡାଇ ଦେଉଛି ହୃଦୟର
ଉଲ୍ଲାସପଣକୁ
ହିଂସ୍ର ଜାନୁଆରସବୁ ଲଂଫ
ମାରିବାକୁ ଉଦ୍ୟତ
ହୃଦୟରୁ

କେଜାଣି, ସେମାନେ ପଦ୍ମନାଭଙ୍କୁ
ଖ୍ରିନ୍‌ଭିନ୍ କରି କେଉଁ
ଇତିହାସ ରଚିବେ ।

କେଉଁ ସ୍ୱର୍ଗ ଆଡେ ତାଙ୍କର
ପ୍ରୟାଣ
ନାଭିପଦ୍ମରୁ ଗଳୁଥିବା ଭୃଣ
କାହାର, ମୋର
ନା ମୋର ଭାବନାର... ।



## ଉତ୍ତର

ଏମିତି ବି ହୁଏ
ସଙ୍ଗମ ସରିଲା ବେଳକୁ
ନ ଥାଏ ନାୟିକା,
ସିଦ୍ଧଯୋଗୀ ଏକା ।

ନୈରାତ୍ମାର ଶୀତ୍କାର
ଉବୁଟୁବୁ ହୁଏ ଉପତ୍ୟକାରେ
ସିଦ୍ଧଯୋଗୀ ଯୋଡୁଥାନ୍ତି
ସରଳ ଉତ୍ତର
ପରମାତ୍ମା ପାଇଁ ;

ଯୋଗୀ କିଏ
ଭୋଗୀ କିଏ
ପ୍ରଶ୍ନ ପଚାରି ଲାଭ କଣ
ଏକ ଲାଉର ମଞ୍ଜି
ରାମଚନ୍ଦ୍ର ରାମିଆ ଭଣ୍ଡାରି ।

କପାଳରେ ଲେଖାଥାଏ
ରାଜଯୋଗ ତ

ଲଂବି ଆସେ ସୁନ୍ଦରୀର
ଫୁଲମାଳ
ଦାରିଦ୍ର୍ୟ ତ
ପତ୍ନୀ ବି ମନା କରିଦିଏ
ସହବାସ ।

ସିଦ୍ଧ ଯୋଗୀ
ତନ୍ତ୍ର ଭିତରେ ଖୋଜନ୍ତି
ନୈରାତ୍ମା ସୁନ୍ଦରୀ
ପ୍ରକୃତି ହାଲ୍ଲୋଳମୟ
ଅନନୁଭୂତ ସଙ୍ଗମରେ

କିଏ ଜଣେ ପ୍ରଶ୍ନ କରେ
କପାଳରେ କଣ ଲେଖାଥାଏ ?
ସୁନ୍ଦରୀ ନା
ବିଫଳ ପ୍ରେମର ଯାଦୁକରୀ ।

ସିଦ୍ଧଯୋଗୀ
ସଜାଡୁଥାଏ କୋଥଳୀ
ଉତ୍ତର ପାଇଁ ।



## ଆ

ଗାଁ ସେପଟେ ଶାଳବଣ
ପାହାଡ଼ ଖୋଲ,
ଝିଲିଙ୍ଗିର ସାମ୍ରାଜ୍ୟ

କେଜାଣି, କୋଉ ସ୍ୱପ୍ନରେ
ଝିଲିଙ୍ଗି ବିସ୍ମୟ ବିଭୋର
ଆମ୍ବ କୁଇଲି ଖିଆ ପେଟରେ
ପେଟେ ଶୋଷ
ଝର୍ଣ୍ଣାଜଳରେ
ଡଙ୍ଗରର ଶୋଷ ବୋହିଗଲା ପରି,
କୁକୁଡ଼ା ଭାଡ଼ିରୁ କୁକୁଡ଼ା ସବୁ ଉଭାନ୍

ଏବେବି କଏରୁ ବିପିଏଲ୍ ଚାଉଳ ଆଣି
ହାଣ୍ଡିଆ ରାନ୍ଧେ
ଝିଲିଙ୍ଗିକୁ ଧରି ଜଙ୍ଗଲକୁ ଯାଏ
ପିତାଳୁ କନ୍ଦା ଖୋଳେ କରଡ଼ି ଭାଙ୍ଗେ
ଝରିପୋକ ସାଉଁଟି ଖାଦ୍ୟ ପରଷେ;

ଝିଲିଙ୍ଗି ପ୍ରକୃତି କୋଳରେ ଝର୍ଣ୍ଣାଟିଏ
ଗଛ ଡାଳରେ କୋଇଲିଟିଏ

କୁଡିଆ ଭାଙ୍ଗିଗଲେ
ଗଛ ମୂଳକୁ ଚାହେଁ
ଚାଳ ତଳେ ବସା ବାନ୍ଧିଥିବା
ଘରଚଟିଆ ଦୁଇଟିକୁ
ଖୁଦଦିଏ ଗେଲ କରେ
କଏଁରୁକୁ ସ୍ୱପ୍ନ ଦେଖୁ ଦେଖୁ
ନିଦଯାଏ ।
ଗାଁ ସେପଟେ ଶାଳବଣ
ଏପଟେ ନଳବନ୍ଧ
ସେପଟେ କୈଦନ୍ତା
କଏଁରୁର ଘର ;
ଶୂନ୍‌ଶୂନ୍ ପବନର ଆହ୍ୱାନ
ଉଲ୍ଲାସମୟ ଫଗୁଣ ।

ପାହାଡ ଖୋଲରେ
ମନଦିଅନିଆ
ଗଛ ଡାଳରେ
ହଳଦୀବସନ୍ତ
ସୂର୍ଯ୍ୟ ନଇଁ ଗଲେ
ମନ ଚହଲେଇ
ଝରଣା ଗାଏ
ଆ, ଜୀବନ ଦେଇ ଯା
ଆ .....



## ଅନୁରାଗର କବିତା

କେମିତି ଅରଣ୍ୟ
ମାଗିଲେ ତୁମର
ନ ମାଗିଲେ ତୁମର ।

ଛୁଇଁ ଦେଲେ ଆକାଶକୁ
ଉଠିଯାଏ
ନ ଛୁଇଁଲେ ମାଟିକୁ
ବୋଳିଦିଏ ।

ଗୋଟାପଣେ ନିଜର
ବର୍ଷାର ଅସରା, ଦେହସାରା ।

ସମର୍ପଣରେ ଲେଖିହୁଏ
କବିତା
ପ୍ରେମର କଥା
ଛୁଇଁଦେଲେ ଲତା
ନ ଛୁଇଁଲେ କାଠ ।

ଅସ୍ପଷ୍ଟ ଅନ୍ଧାର ପରି
ଗଡ଼ି, କୁଆଡେ

ଶବ୍ଦ ସବୁ ସ୍ଥିର
ଦୁଇ ଓଠ ଫାଙ୍କରେ ।

କେମିତି ଅରଣ୍ୟ
ପକ୍ଷୀର
ପଶୁର
ଗଛର
ତୁମର ତୁମର ।

ସମର୍ପିତ ଭାବରେ
ପ୍ରାଚୁର୍ଯ୍ୟ
ନିଜକୁ ନିଃସ୍ୱକରି
ଅନ୍ୟକୁ ଦେଇ ଦେବାର
ଉଦାରତା

କଣ ଥାଏ ଦେବାରେ
ଆକାଶ ନା ଝର୍ଣ୍ଣା !
ଛୁଇଁଲେ କୋହ
ନ ଛୁଇଁଲେ ମୋହ
ସମର୍ପଣର ପଥରେ
ଅରଣ୍ୟ ଅନୁରାଗର କବିତା
ମାଗିଲେ ତୁମର
ନ ମାଗିଲେ ବି ତୁମର ।



## ପ୍ରଜାପତି ପଛରେ

ପ୍ରଜାପତିର ରଙ୍ଗ ଖୋଜାରେ
ଜୀବନ ନିଅଣ୍ଟ !
କେଜାଣି କୋଉ ପ୍ରାରବ୍ଧର
ଅନୁପ୍ରେରଣା
ଗୋଡାଉଥାଏ ପ୍ରଜାପତି ପଛରେ ।

ଏବେ ସକାଳ
ନାନା ରଙ୍ଗର ଫୁଲ ସହ
ତାର କଥୋପକଥନ
ଏବେ ସନ୍ଧ୍ୟା
ପତ୍ର ସନ୍ଧିରେ ତାର
ସହବାସ ।

ସମୟ ସହିତ ତାର
କିଛି ହିଁ ସମ୍ପର୍କ ନାହିଁ
ଦୂର ଗୋହିରୀରେ
ସ୍ୱପ୍ନ ଜଳୁଥାଏ
ଦିନକ ପାଇଁ ।

ପୁଣି ସକାଳକୁ ଛୋଟ ପିଲା ସବୁ
ଦଉଡୁଥାନ୍ତି
ପ୍ରଜାପତି ପଛରେ
ହରେକ ରଙ୍ଗର
ଫୁଲ ସହ ପ୍ରଜାପତି
ଜାରି ରଖିଥାଏ ତାର
ଆଲୋଚନା ।

ପଛରେ ଲିପିବଦ୍ଧ
କାହାର କାନ୍ଦଣା
କାହାର ଚିତ୍କାର
କାହାର ଦୀର୍ଘଶ୍ୱାସ
ଦିହର ଦରଜ;
ମିଛି ମିଛିକା ସ୍ୱପ୍ନ
ଅନ୍ଧାରରେ
ଆତ୍ମଗୋପନ କରିଥାଏ ।

ଫୁଲରୁ ଫୁଲକୁ
ପହଁରି ଆସୁଥାଏ ସ୍ୱପ୍ନ
ପ୍ରଜାପତି ପରି
କୋଉ ପ୍ରାନ୍ତରର
ଅନୁପ୍ରେରଣା ଗୋଡାଉଥାଏ
ପ୍ରଜାପତି ପଛରେ କେଜାଣି ?



# ପରାଣ ମିତ

କେଜାଣି, ତମ ସ୍ପର୍ଶର କିମିଆ
କେମିତି ବଦଳାଇ ଦିଏ ନିଜକୁ
ଋତୁକୁ, ପ୍ରକୃତିକୁ ।

ତମ ସ୍ପର୍ଶରେ ନିର୍ବିକଳ୍ପ ସମାଧି
ପ୍ରାଣର
ନିଜକୁ ଛୁଇଁ ହୁଏ ବାରବାର ।
ସ୍ପର୍ଶରେ ନୀରବତା ଥାଏ
ପ୍ରଗଳ୍ଭତା ବି
ଚଞ୍ଚଳତା ଥାଏ
ନିଥରତା ବି ।

ଏକ ମନ୍ଥିତ ରାଗିଣୀ
ଗ୍ରାସୁଥାଏ ତାଳୁରୁ ତଳିପା
ଶୁଭିଯାଏ ଜୀବନ ଜୀବନର ଗୀତ
ଅଶୁଣା ଶବ୍ଦର ମାଧୁର୍ଯ୍ୟ ।

ସବୁଜ ରଙ୍ଗର ଶୀର୍ଷରେ ତୁମେ
ବାନ୍ଧ ପତାକା

ପ୍ରେମର ଚିରାଳ ପରି
ନିଜ ଢ଼ଙ୍ଗରେ ଯେତେ ବାସ୍ତବତା

ଏତେ କୁହୁକ ଥାଏ ସ୍ପର୍ଶରେ
ଜଣାପଡେନା
ପ୍ରାଣକୁ ଆତୁର କରେ
ହଜିଯାଏ ସମସ୍ତ ଠିକଣା ।

ତମେ ସଂସାରର ଜଂଜାଳ
ଏଡ଼ାଇ
ଆସୁଥାଅ ଢଳି ଢଳି
ସମୟର ତିକ୍ତ ମଧୁ ରସରେ ଗାଧୋଇ
ଶବ୍ଦକୁ କବିତା କରି
ହୃଦୟକୁ ପ୍ରେମରେ ମାଜି
ଯେତେ ଯେତେ କାମନାର
ସ୍ପଷ୍ଟ ରୂପଦେଇ ।

ରଙ୍ଗମୟ ଅଗଣାରେ
ଲାଗିଯାଏ ଅତି ପ୍ରିୟରଙ୍ଗ
ପ୍ରେମମୟ ଜୀବନରେ
ପ୍ରେମର ବିଜୟ
ତୁମ ସ୍ପର୍ଶ ପ୍ରିୟ
ମୋର
ଅତି ଲୋଭନୀୟ

ଜାଣେ, ତମ ସ୍ପର୍ଶ ପାଇଁ
ମୁଁ ବାଉଳା ଚିରଦିନ
ମୋ ମନରେ ହୃଦରେ
ପ୍ରତି ଲୋମକୂପରେ
ତୁମରି ସ୍ପନ୍ଦନ ।

ପ୍ରିୟ ତୁମେ
ତୁମ ସ୍ପର୍ଶ ପ୍ରାଣହର
ଗୀତ
ଗୁଣୁଗୁଣୁ ହାଡ଼ର ବଂଶୀରେ
ଉଲୁସାଏ ପରାଣର
ମିତ ।



# ପଛରେ ଇତିହାସ

ମୁଁ ବିସ୍ଥାପିତ ନୁହେଁ
ବିସ୍ତାରିତ,
ଅନ୍ତହୀନ ଶୂନ୍ୟତା ପରି
ଅନ୍ତସ୍ଥ, ସୂକ୍ଷ୍ମ ଓ ଜର୍ଜରିତ ।

କ୍ରମଶଃ ମୁଁ ବଢ଼ିଚାଲେ
ତୁମ ଅନୁରାଗ ପରି
ଆଗରେ ତୁମେ
ପଛରେ ଇତିହାସ
ଲେଖିଚାଲିଥାଏ ମୁଁ କେମିତି
ନିଃଶେଷ ହୁଏ ।

ମୁଁ ଆଗେଇବା ସହିତ
ତୁମେ ସ୍ଥିର
ରାସ୍ତାକଡର ବରଗଛ

କେଜାଣି, ଗତି କୁଆଡେ
ମୁକ୍ତି ମାଗି ମାଗି ଥେୟା
ଭିତରର ଦୁଃଖ
ତଳକୁ ତଳ ଲମ୍ବିଛି

ଅନ୍ଧାର
ଉପରକୁ ଉପର
ଆକାଶର ଆଲୋକ
ମୁଁ ତ୍ରିଶଙ୍କୁ ସ୍ଥିର ଅଚଞ୍ଚଳ ।

କ୍ରମଶଃ ଚାଲିବା ନିର୍ଦ୍ଧାରିତ
ଗତି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅସହଜ
ଇତିହାସକୁ ପଛରେ ପକାଇ
ଝୁଣ୍ଟିବାକୁ ହୁଏ ବାରବାର

ଆଗେଇବାକୁ ଯେମିତି
ମୁଁ କରିନେଇଛି
ସ୍ଥିର ନିଶ୍ଚିତ
ହାରିବା ଜିତିବା ପ୍ରସଙ୍ଗ ନୁହେଁ
ପ୍ରସଙ୍ଗ ବୋଧିସତ୍ତ୍ୱ
ଚିରନ୍ତନ ରହସ୍ୟ ପରି ଉନ୍ମୁକ୍ତ ।

ମୁଁ ବିସ୍ଥାପିତ ନୁହେଁ
ବିସ୍ତାରିତ
ଲକ୍ଷ୍ୟ ସ୍ଥିର ନିଶ୍ଚିତ
ଆବେଗପ୍ରବଣ ଗତି ନିର୍ଦ୍ଧାରିତ
ଆଗରେ ତୁମେ
ପଛରେ ଇତିହାସ ।



# ନିଜ ନିଜର ସମୁଦ୍ର

ନାରୀର ପ୍ରେମ ସମୁଦ୍ରର ଜୁଆର
ସମାନ
ଯନ୍ତ୍ରଣା ସହିବା ଅବଧାରିତ ।

ବୟସର ଝୋଦେଇରେ ରକ୍ତାକ୍ତ
ପ୍ରତିଟି ଦାଗରେ ଦିଶିଯାଏ
ଇତିହାସ ;

ଇତିହାସକୁ ଉଖାରିଲେ
ଲୁହ ଛଳଛଳ ଅକ୍ଷର
ଅକ୍ଷରକୁ ଛୁଇଁଲେ
ସମୁଦ୍ରର ଲହର
ନିଆଁପରି ପାଣି ପରି
ଗରମ ଶୀତଳ
ତାକୁ ନରମ ଛୁଆଁ ଦେଇ
ସାଇତି ରଖ କାଳ କାଳ ।

ନାରୀର ପ୍ରେମ ସମୁଦ୍ରର ଜୁଆର ସମାନ ।





## ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

ଜନ୍ମ : ୩୦-୧୨-୧୯୫୯

ଆମ ସମୟର ଚର୍ଚ୍ଚିତ କବି ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ସୃଜନର ପ୍ରତ୍ୟେକଟି ନିଃଶ୍ୱାସ ଶାଗୁଆ। ତାଙ୍କ କବିତା ଏକ ଅବସ୍ଥା, ଯେଉଁଠି ଆକାଶ ଭଳି ବିଜନତା ଏବଂ ବିଜନତାକୁ ମଧୁରତମ ରୋମାଣ୍ଟିକ୍ ମନ୍ମୟ କରିଛି ଅମୃତ ଅଭିପ୍ସା। ମିଥ୍ୟା ପାର୍ଥିବ ପ୍ରଣୟ ରୂପାନ୍ତରିତ ହୋଇଛି ଅର୍ଥଯୁକ୍ତ ସ୍ୱତଃସିଦ୍ଧ ସତ୍ୟ ରୂପରେ। ପ୍ରାୟ ସବୁ କବିତା ନେଇଛନ୍ତି ଜନ୍ମ ସଦ୍ୟୋଜାତ ବସ୍ତୁ ସହିତ। ଯାହା ବେଶ୍ ସ୍ପର୍ଶନଶୀଳ, ସାଂଗୀତିକ ଓ ସମସାମୟିକ। ତାଙ୍କ କବିତାରେ ସିମୀତତା କରିନାହିଁ ଆଲିଙ୍ଗନ ତୃଷ୍ଣାର ନୀରବତାକୁ। ପରିଚିତ ସ୍ମୃତି, ଆତୁର ମନ, ଆଶାଝରର ସଂଗୀତରେ ପ୍ରଗଲ୍‌ଭ। ଏ ପ୍ରଗଲ୍‌ଭତା କବିର ସହଚର ଚିରକାଳ। ଆଶାର ଯୌବନ ଯଦି ନ ରହିବ, ଜିଇଁବାରେ ରମଣରତ ହେବ କିପରି ଦେହର ସନ୍ନ୍ୟାସୀ? ଆତ୍ମାତ ଆକାଶଟିଏ, ସଂସାରର ହାନିଲାଭରେ ତା ଯାଏ ଆସେ କେତେ? ସେ କେବଳ ଦର୍ପଣଟିକୁ ଅନାଇଥାଏ। ପ୍ରଲୋଭନ ରଜ୍ଜୁଟିଏ ହୋଇ ବାଂଧି ପକାଏ ସବୁ ପ୍ରତିଶ୍ରୁତିକୁ। ପ୍ରତିଶ୍ରୁତି ସବୁ ଆକାଶ ପରି ସୁନ୍ଦର, ମଧୁର ଓ ସର୍ଜନଶୀଳ ।

ଏହା କବିଙ୍କ ଷଷ୍ଠ କବିତା ସଂକଳନ। ଆଶା ପାଠକ ମହଲରେ ଏହା ଆଦୃତ ହେବ।

-ନକୁଳ ଚନ୍ଦ୍ର ସାହୁ